# ଗୁରୁ

# GURU

ରଚନା

ଡଃ ସୁରେଶ ଚନ୍ଦ୍ର ବରାଡ଼
ଗ୍ରା/ପୋ:ହରିହରପୁର, ଭାୟା:ଶରଣକୁଳ,
ଜିଲ୍ଲା:ନୟାଗଡ଼
ଓଡ଼ିଶା, ପିନ୍:୭୫୨୦୮୦
ଦୂରଭାଷ:୯୪୩୭୯୫୮୦୭୭

Writer:
Dr.Suresh Chandra Barad
AT/PO:Hariharpur,Via:Sarankul
DIST:Nayagarh,
ODISHA, 752080
Mob: 9437958077

ପ୍ରକାଶକ :
ଗୁରୁକୁଳ ପବ୍ଲିସିଙ୍ଗ ହାଉସ
ଶରଣକୁଳ, ଜିଲ୍ଲା:ନୟାଗଡ଼
ଓଡ଼ିଶା, ପିନ୍:୭୫୨୦୮୦
ଦୂରଭାଷ:୯୪୩୭୯୫୮୦୭୭

Publisher:
Gurukula Publishing House
Sarankul, DIST:Nayagarh,
ODISHA, 752080
Mob: 9437958077

ମୁଦ୍ରଣ, ପ୍ରଚ୍ଛଦ ଓ ପରିପାଟୀ
ଜଗନ୍ନାଥ ପ୍ରିଣ୍ଟିଙ୍ଗ୍ ପ୍ରେସ୍
ଶରଣକୁଳ, ନୟାଗଡ଼
ମୋ-୯୮୫୩୨୫୨୮୪୩,

Printing, Cover Design:
Jagannath Printing Press
Sarankul, Nayagarh
Mob: 9853252843

ପ୍ରଥମ ପ୍ରକାଶ:
୨୦୨୩ ମସିହା

1ST EDITION:
Year 2023

ଛପା ସଂଖ୍ୟା:
୧୦୦୦

Copy:
1000

ମୂଲ୍ୟ:
ଟ.୧୫୦.୦୦
(ଏକ ଶତ ପଚାଶ ଟଙ୍କା ମାତ୍ର)

Price:
Rs.150/-
(One HundredFifty Rupees only)



ISBN:9789394422209





# ମୋ କଥା

ମନ୍ନାଥ ଶ୍ରୀ ଜଗନ୍ନାଥ ମତ୍ ଗୁରୁ ଶ୍ରୀ ଜଗଦ୍ ଗୁରୁ ।
ମଦାତ୍ମା ସର୍ବ ଭୁତାତ୍ମା ତସ୍ମୈ ଶ୍ରୀ ଗୁରବେ ନମଃ ।।

୧୯୮୩ ମସିହାରେ ମେଟ୍ରିକ ପାସ କଲା ଦିନଠାରୁ ତଳ ଶ୍ରେଣୀର ଛାତ୍ରଛାତ୍ରୀ ମାନଙ୍କୁ ଟ୍ୟୁସନ ପଢ଼େଇବା ଆରମ୍ଭ ହୋଇଥିଲା । ସେବେ ଠାରୁ ପ୍ରତି ଗୁରୁ ଦିବସରେ ଗୁରୁ ଶିଷ୍ୟ ସମ୍ପର୍କ ଓ ପରମ୍ପରାକୁ ନେଇ ମନରେ କୌତୁହଳ ଓ ଜିଜ୍ଞାସା ଆପଣା ଛାଏଁ ସୃଷ୍ଟି ହୋଇଥିଲା । ବିଶୃଙ୍ଖଳିତ ସମାଜକୁ ଲକ୍ଷ୍ୟ କଲେ ମନରେ ଏକ ବଦ୍ଧମୂଳ ଧାରଣା ସୃଷ୍ଟି ହୋଇଥିଲା ଯେ ଏ ସମସ୍ତ ପଛରେ ଏହି ଗୁରୁ ଶିଷ୍ୟ ସମ୍ପର୍କର ଅବକ୍ଷୟ ହିଁ ଦାୟୀ । ଗତାନୁଗତିକ ଚଳଣି ଓ ପରମ୍ପରାକୁ ଛାଡ଼ି ନିଜେ ଏକ ଗୋଦା ତିଆରି କରି ନିଜ ଗୋଦାରେ ଚାଲି ଜୀବନରେ ଆଗେଇବାର ମାନସିକତା ମୋତେ ପ୍ରଲୋଭିତ କରିଥିଲା । ଏଣୁ ଟ୍ୟୁସନ ହେଉ କି ବିନା ପାରିଶ୍ରମିକରେ ପାଠପଢ଼ା ହେଉ ସବୁଠି ଏହି ଅବକ୍ଷୟିଷ୍ଣୁ ସମ୍ପର୍କକୁ ସଜାଡ଼ିବାର ଦୃଢ଼ ଇଚ୍ଛାରେ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଥିଲି । ୧୯୯୦ ମସିହାରେ ଲୋକ ବିଦ୍ୟାପୀଠ, ପଞ୍ଚିରିଡ଼ା ମାନପୁରରେ ନିଯୁକ୍ତି ପରେ ସେହି ବିଦ୍ୟାଳୟକୁ ପରୀକ୍ଷାଗାର ରୂପେ ଗ୍ରହଣ କରି ଦେଖିଲି ଗୁରୁ ଯଦି ନିଜେ ନିଜର ଗୁରୁପଣର ଗାରିମା ବଜାୟ ରଖି ପାରିବ ଶିଷ୍ୟ ବି ତା' ପାଇଁ ତା'ର ଶିଷ୍ୟପଣରେ ଦାଗ ଲଗେଇବାକୁ ଦେବ ନାହିଁ । ଦୀର୍ଘ ୩୩ବର୍ଷର ଶିକ୍ଷକତା ଜୀବନ ଭିତରେ ଯାହା ଜୀବନର ସିଦ୍ଧାନ୍ତ ରୂପରେ ଗ୍ରହଣ କରି ବାସ୍ତବ କ୍ଷେତ୍ରରେ ପ୍ରୟୋଗକରି ଦେଖିଛି ଓ ଫଳ ପ୍ରାପ୍ତ କରିଛି ତାହାକୁ ଶବ୍ଦରେ ପରିପ୍ରକାଶ କରିବାର ଇଚ୍ଛା ଯଦିଓ ଥିଲା ସାମର୍ଥ୍ୟ ଅଭାବରେ ତାହା ଫଳବତୀ ହୋଇ ପାରି ନ ଥିଲା । ଉତ୍ତର ଜୀବନରେ ଓଡ଼ିଶା ମୁକ୍ତ ବିଶ୍ୱ ବିଦ୍ୟାଳୟ, ସମ୍ବଲପୁରର ଓଡ଼ିଆ ସ୍ନାତକୋତ୍ତର ପାଠ୍ୟକ୍ରମରେ ନାମ ଲେଖାଇ ପଢ଼ିବା ସମୟରେ ଏପରି ଜଣେ ମହନୀୟ ଗୁରୁଙ୍କ ସମ୍ପର୍କରେ ଆସିଲି ଯାହାଙ୍କ ଯୋଗୁଁ ମୋର ଭାବନାକୁ ଶବ୍ଦରେ ରୂପାନ୍ତରିତ କରିବାର ସାମର୍ଥ୍ୟ ଯେତିକି ଥିଲା ତାହା ବହୁଗୁଣିତ ହୋଇ ଯାଇଥିଲା । ଅବଚେତନ ମନରେ ପୋତା ହୋଇଥିବା ଗୁରୁ ବୃକ୍ଷର ମଂଜିଟି ପାଣି ପବନ ଓ ମୃତ୍ତିକା ପାଇ ବଢ଼ିବାକୁ ଲାଗିଲା ଏବେ ତାହା ଏକ ପୂର୍ଣ୍ଣାଙ୍ଗ ପୁସ୍ତକର ସ୍ୱରୂପ ନେଇ ଆପଣଙ୍କ ହାତରେ ଶୋଭାପାଉଛି ।

ଆପଣମାନେ ଏହାର ଅବଲୋକନରେ ଯଦି ସାମାନ୍ୟ ସୁଖି ତଥା ଖୁସି ହୋଇ ପାରିବେ ତେବେ ତାହା ହିଁ ମୋର ମୋ ଗୁରୁଙ୍କ ପାଇଁ ବାସ୍ତବ ଗୁରୁଦକ୍ଷିଣା ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

(ଡ.ସୁରେଶ ଚନ୍ଦ୍ର ବରାଡ଼)



# ଗୁରୁଦେବଙ୍କ ଶ୍ରୀମୁଖରୁ ...........

ସକାରାତ୍ମକ ଅନ୍ୱେଷୀ ମାନସିକତା ସର୍ଜନଶୀଳତାର ଧାରକ । ଆହରଣ-ସମୀକରଣ ଧୂରୀଣ ଡଃ ସୁରେଶ ଚନ୍ଦ୍ର ବରାଡ଼ ବିଦ୍ୟାର୍ଣ୍ଣବଙ୍କ ମୌଳିକ ଅବବୋଧ ଓ ବ୍ୟାଖ୍ୟାନ ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞା-ସମୃଦ୍ଧ । ବୃତ୍ତି ଓ ପ୍ରବୃତ୍ତିରେ ସମନ୍ୱୟ ରକ୍ଷା କରି, ନିଷ୍ଠାର ସହିତ ସମାଜର ବିବିଧ କ୍ଷେତ୍ରରେ ଉତ୍ସର୍ଗୀକୃତ ସେବା ନିମଗ୍ନ ନିଜସ୍ୱ ବଳିଷ୍ଠ ପ୍ରତିଭାରେ ମୂର୍ତ୍ତିମନ୍ତ ସୁଶିକ୍ଷକ, କବି, ଜଗନ୍ନାଥ ସଂସ୍କୃତିର ପ୍ରଚାରକ, ପ୍ରସାରକ ଏବଂ ଗବେଷକ, ଦକ୍ଷ ସଂଗଠକ, ସମାଜ ସଚେତକ, ସଂସ୍କାରକ, କବି ତିଳକ ଡଃ ବରାଡ଼ ଏକ ଅନନ୍ୟ ପ୍ରତିଭୂ ।

ଡଃ ବରାଡ଼ଙ୍କ ସର୍ଜନାତ୍ମକ ପ୍ରତିଭାର ଦ୍ୟୋତକ ସୃଷ୍ଟି ଗୁଡ଼ିକ ହେଉଛି-'ଭାଗବତ ଶତକ', 'ମହିମା ମୟ ଲଡୁବାବା', 'ଲଡୁବାବା ସ୍ତୁତିମାଳା', 'ଲଡୁବାବା ବିଳାସ', 'ପୁରୁଷୋତ୍ତମ ସ୍ତବ', 'ନୀଳାଚଳ କ୍ଷେତ୍ର ମାହାତ୍ମ୍ୟ(କପିଳ ସଂହିତା)', 'ବିପ୍ଳବ', 'କୁସୁମୀ', 'ଶ୍ରୀଜଗନ୍ନାଥ ବେଶ ପରଂପରା:ଏକ ଅଧ୍ୟୟନ', 'ଶ୍ରୀଜଗନ୍ନାଥ ଜ୍ଞାନ ମଣ୍ଡଳ' ଇତ୍ୟାଦି ।

ପୌରାଣିକ ତଥ୍ୟ ଓ ପ୍ରଚଳିତ କିମ୍ବଦନ୍ତୀକୁ ଭିତ୍ତିକରି ନିଜସ୍ୱ ଚେତନାର ସ୍ପର୍ଶରେ ସେ ରୂପ ଦେଇଛନ୍ତି ତାଙ୍କର ସୃଷ୍ଟିସମ୍ଭାରକୁ ।

ଏତଦ୍ ଭିନ୍ନ ଶିଶୁ କବିତା ସଂକଳନ 'ବିପ୍ଳବ' ଏକ ସମାଜ ସଚେତନ ଧର୍ମୀ ଅସାଧାରଣ ସୃଷ୍ଟି ।

ନିଜସ୍ୱ ଜନ୍ମମାଟିର ଆକର୍ଷଣରେ ବିଭୋର କବି ତିଳକ ଡଃ ବରାଡ଼ଙ୍କର ମାନସ ସନ୍ତାନ 'କୁସୁମୀ' ଭ୍ରମଣାନୁଭୂତିର ଏକ ଆତ୍ମିକ ପରିପ୍ରକାଶ ।

କବି ଶ୍ରଦ୍ଧେୟ ଡଃ ସୁରେଶ ଚନ୍ଦ୍ର ବରାଡ଼ଙ୍କର ପୌରାଣିକ ପୂର୍ଣ୍ଣାଙ୍ଗ ରସାଳ କାବ୍ୟ 'ହନୁମାନ ଚରିତାମୃତ' ଆଳଙ୍କାରିକ ରୀତିରେ ରଚିତ ଯାହାର ଶବ୍ଦବିନ୍ୟାସ ଅତ୍ୟନ୍ତ ମନମୁଗ୍ଧକର ।

କବି ଶ୍ରଦ୍ଧେୟ ଡଃ ସୁରେଶ ଚନ୍ଦ୍ର ବରାଡ଼ଙ୍କର ସଦ୍ୟ ପ୍ରକାଶିତ କାବ୍ୟ 'ଗୁରୁ' ପାଠ କରି ମୁଁ ଅତ୍ୟନ୍ତ ପ୍ରୀତ । ଗୁରୁ ଶିଷ୍ୟ ପରମ୍ପରା ଉପରେ ଆଧାରିତ ଏ କାବ୍ୟର ଅନ୍ତଃଚେତନା ହୃଦୟସ୍ପର୍ଶୀ । ଶିକ୍ଷକ ହିସାବରେ ଅବକ୍ଷୟିଷ୍ଣୁ ଏ ଅନନ୍ୟ ସମ୍ପର୍କର କଷ୍ଟ ସେ ଯେପରି ଅଙ୍ଗେ ନିଭେଇଛନ୍ତି ତାହାକୁ ରୂପଦେଇଛନ୍ତି ।

ଜୀବନର ଅନ୍ୟତମ ବ୍ରତ ରୂପେ ଗ୍ରହଣ କରିଥିବା ଡଃ ବରାଡ଼ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାରକ, ଆନ୍ତର୍ଜାତୀୟ ଚାରଣ ଗୋଷ୍ଠୀ, ପୁରୀର ଯୁଗ୍ମ ସଂପାଦକ ଅଧିକରୁ ଅଧିକ ତତ୍ତ୍ୱଦର୍ଶୀ ହୋଇ ନିଜସ୍ୱ ଲେଖନୀକୁ ଅବ୍ୟାହତ ରଖି ମନନଶୀଳତାରେ ବ୍ରତୀ ରୁହନ୍ତୁ, ଏହାହିଁ ପୀଠାଧୀଶ ଶ୍ରୀ ଶ୍ରୀ ଲଡୁକେଶ ମହେଶଙ୍କ ପଦାବ୍ଜରେ ନିବେଦନ ।

ତାଙ୍କର କାବ୍ୟ ସମ୍ଭାର ପାଠକୀୟ ଆଦୃତି ଲାଭ କରୁ ଏବଂ କବି ଯଶସ୍ୱୀ ହୁଅନ୍ତୁ-ଏତିକି କାମନା ।

ଡ.ଗୋବିନ୍ଦ ଚନ୍ଦ୍ର ଦାଶ
ପ୍ରାକ୍ତନ ପ୍ରାଧ୍ୟାପକ ଓଡ଼ିଆ ଭାଷା ସାହିତ୍ୟ ବିଭାଗ
ନୟାଗଡ଼ ସ୍ୱୟଂ ଶାସିତ ମହାବିଦ୍ୟାଳୟ
ନୟାଗଡ଼

# ସୂଚୀପତ୍ର

# କୃତଜ୍ଞତା

ଗୁରୁ ଗୋବିନ୍ଦ ଦୋଉଁ ଖଡ଼େ, କାକେ ଲାଗୁଂ ପାଂୟ ।
ବଲିହାରୀ ଗୁରୁ ଅପନେ ଗୋବିନ୍ଦ ଦିୟୋ ବତାୟ ।।



ଗୋବିନ୍ଦ ପ୍ରଭୁ ଜଗନ୍ନାଥ



୰ଗୋବିନ୍ଦ ଚନ୍ଦ୍ର ବରାଡ଼
ବାପା



ଗୋବିନ୍ଦ ଚନ୍ଦ୍ର ବେହେରା
ଜଗନ୍ନାଥଙ୍କ ଆଡ଼କୁ ନେବା ବ୍ୟକ୍ତି



ଡ.ଗୋବିନ୍ଦ ଚନ୍ଦ୍ର ଦାଶ
ସାହିତ୍ୟ ଆଡ଼କୁ ନେବା ବ୍ୟକ୍ତି

ମୋ
ଜୀବନରେ ଯେଉଁ
ଚାରି ଗୋବିନ୍ଦ ଆବିର୍ଭୁତ ହୋଇ
ମୋ ଜୀବନକୁ ଏକ ଦିଶା
ପ୍ରଦାନ କରିଛନ୍ତି
ସେମାନଙ୍କ ପାଦପଦ୍ମରେ
ଏ ଅଧମ କୃତଜ୍ଞତା ଜ୍ଞାପନ କରୁଛି ।

# ଶ୍ରୀ ଗୁରୁଗୀତା

## ଅଥ ପ୍ରଥମୋଽଧ୍ୟାୟଃ

ଅଚିନ୍ତ୍ୟାବ୍ୟକ୍ତରୂପାୟ ନିର୍ଗୁଣାୟ ଗୁଣାତ୍ମନେ ।
ସମସ୍ତ ଜଗଦାଧାର ମୂର୍ତ୍ତୟେ ବ୍ରହ୍ମଣେ ନମଃ ।।୧ ।।

## ପ୍ରଥମ ଅଧ୍ୟାୟ

ଯେଉଁ ବ୍ରହ୍ମ ଅଚିନ୍ତନୀୟ, ଅପ୍ରକାଶିତ, ତ୍ରିଗୁଣ ଯାହାଙ୍କୁ ସ୍ପର୍ଶ କରିପାରି ନାହିଁ (କିନ୍ତୁ ସ୍ଥୁଳ ଦୃଷ୍ଟିରେ ଦେଖୁଥିବା ଲୋକମାନଙ୍କର ଅଜ୍ଞାନତା କାରଣରୁ) ତ୍ରିଗୁଣାତ୍ମକ ଏବଂ ଅଖିଳ ବ୍ରହ୍ମାଣ୍ଡର ଅଧିଷ୍ଠାତା ସେହି ବ୍ରହ୍ମଙ୍କୁ ନମସ୍କାର ।।୧ ।।

ତ୍ରିଗୁଣ ଯାହାଙ୍କୁ   କରିନାହିଁ ସ୍ପର୍ଶ
ଅଚିନ୍ତ୍ୟ ଅପ୍ରକାଶିତ,
ଅଖିଳ ବ୍ରହ୍ମାଣ୍ଡ   ଅଧିଷ୍ଠାତା ବ୍ରହ୍ମ
ଚରଣରେ ପ୍ରଣିପାତ ।

## ଋଷୟଃ ଉଚୁଃ

ସୂତ ସୂତ ମହାପ୍ରାଜ୍ଞ ନିଗମାଗମପାରଗ ।
ଗୁରୁସ୍ୱରୂପମସ୍ମାକଂ ବ୍ରୂହି ସର୍ବମନାପହମ୍ ।।୨ ।।

ଋଷିମାନେ କହିଲେ : ହେ ମହାଜ୍ଞାନୀ, ହେ ବେଦ-ବେଦାନ୍ତ ମାନଙ୍କର ଜ୍ଞାତା ! ହେ ପ୍ରିୟ ସୂତ ମହାଶୟ ! ସମସ୍ତ ପାପକୁ ନାଶ କରୁଥିବା ଗୁରୁଙ୍କର ସ୍ୱରୂପ ଆମ୍ଭମାନଙ୍କୁ ଶୁଣାନ୍ତୁ ।।୨ ।।

ଆହେ ମହାଜ୍ଞାନୀ   ବେଦବେଦାନ୍ତର
ଜ୍ଞାତା ପ୍ରିୟ ସୂତ ମୁନୀ,
ସର୍ବ ପାପ ନାଶି   ଗୁରୁଙ୍କ ସ୍ୱରୂପ
କୁହନ୍ତୁ ବିନତି ଘେନି ।

ଯସ୍ୟ ଶ୍ରବଣମାତ୍ରେଣ ଦେହୀ ଦୁଃଖାଦ୍ୱିମୁଚ୍ୟତେ ।
ଯେନ ମାର୍ଗେଣ ମୁନୟଃ ସର୍ବଜ୍ଞତ୍ୱଂ ପ୍ରପେଦିରେ ।୩ ।
ଯତ୍ପ୍ରାପ୍ୟ ନ ପୁନର୍ଯାତି ନରଃ ସଂସାର ବନ୍ଧନମ୍ ।
ତଥାବିଧଂ ପରଂ ତତ୍ତ୍ୱଂ ବକ୍ତବ୍ୟମଧୁନା ତ୍ୱୟା ।।୪ ।।

ଯାହା ଶୁଣିବା କ୍ଷଣି ମନୁଷ୍ୟ ଦୁଃଖରୁ ମୁକ୍ତ ହୋଇଥାଏ, ମୁନିମାନେ ସର୍ବଜ୍ଞାନ ପ୍ରାପ୍ତ ହୋଇଥାଆନ୍ତି, ଯାହା ପାଇ ମନୁଷ୍ୟ ପୁନର୍ବାର ସଂସାର ବନ୍ଧନରେ ବାନ୍ଧି ହୁଏ ନାହିଁ ସେହି ପରମ ତତ୍ତ୍ୱବାଣୀ ଆପଣ କୁହନ୍ତୁ ।।୩,୪ ।।

ଯାହାର ସ୍ମରଣେ ସମସ୍ତ ଦୁଃଖରୁ
ମୁକ୍ତ ହୁଅଇ ମନୁଷ୍ୟ,
ମୁନିଗଣ ସର୍ବ- ଜ୍ଞାନ ପ୍ରାପ୍ତ କରି
ସଂସାରେ ଲଭନ୍ତି ଯଶ ।
ଯାହା ଲାଭକରି ସଂସାର ବନ୍ଧନେ
ପୁନର୍ବାର ନରଗଣ,
ନ ପଡ଼ନ୍ତି ସେହି ପୁଣ୍ୟ ତତ୍ତ୍ୱବାଣୀ
କରୁଣା କରି ବଖାଣ ।

ଗୁହ୍ୟାଦ୍‌ଗୁହ୍ୟତମଂ ସାରଂ ଗୁରୁଗୀତା ବିଶେଷତଃ ।
ତ୍ୱତ୍‌ପ୍ରସାଦାଚ୍ଚ ଶ୍ରୋତବ୍ୟା ତତ୍‌ସର୍ବଂ ବ୍ରୂହି ସୂତ ନଃ ।।୫ ।।

ଯେଉଁ ତତ୍ତ୍ୱ ପରମ ରହସ୍ୟମୟ ଏବଂ ଶ୍ରେଷ୍ଠ ସାରତତ୍ତ୍ୱ । ବିଶେଷ କରି ଯାହା ଗୁରୁଗୀତା ଅଟେ ତାହା ଆପଣଙ୍କ କୃପାରୁ ଆମ୍ଭେ ଶୁଣିବାକୁ ଚାହୁଁଛୁ । ହେ ପ୍ରିୟ ସୂତ ମହାଶୟ ! ସେ ସମସ୍ତ ଆମ୍ଭଙ୍କୁ ଶୁଣାନ୍ତୁ ।।୫ ।।

ଗୁହ୍ୟୁ ଗୁହ୍ୟତମ ଶ୍ରେଷ୍ଠ ଗୁରୁଗୀତା
ବଳିଛି ମନ ଶ୍ରବଣେ,
ହେ କୃପାଳୁ ସୂତ ଶୁଣାଇ ଉଦ୍ଧର
କୃପାପ୍ରାର୍ଥୀ ଋଷିଗଣେ ।

ଇତି ସଂପ୍ରାର୍ଥିତଃ ସୂତୋ ମୁନିସଂଘୈର୍ମୁହୁର୍ମୁହୁଃ ।
କୁତୂହଳେନ ମହତା ପ୍ରୋବାଚ ମଧୁରଂ ବଚଃ ।।୬ ।।

ଏହିପରି ବାରମ୍ବାର ପ୍ରାର୍ଥନା କରାଯିବାରୁ ସୂତ ମହାଶୟ ବହୁତ ପ୍ରସନ୍ନ ହୋଇ ମୁନିମାନଙ୍କୁ ମଧୁର କଣ୍ଠରେ ସମ୍ବୋଧିତ କରି କହିଲେ ।।୬ ।।

ସୂତ ଋଷିବର ମୁନିଗଣଙ୍କର
ପ୍ରାର୍ଥନାରେ ହୋଇ ପ୍ରୀତ,
ପ୍ରସନ୍ନ ଚିତ୍ତରେ ମଧୁର କଣ୍ଠରେ
କହି କଲେ ସମ୍ବୋଧିତ ।

## ସୂତ ଉବାଚ

ଶୃଣୁଧ୍ୱଂ ମୁନୟଃ ସର୍ବେ ଶ୍ରଦ୍ଧୟା ପରୟା ମୁଦା ।
ବଦାମି ଭବରୋଗଘ୍ନୀଂ ଗୀତାଂ ମାତୃ ସ୍ୱରୂପିଣୀମ୍ ।।୭ ।।

ସୂତ ମହାଶୟ କହିଲେ : ହେ ମୁନିଗଣ ! ସଂସାରରୂପୀ ବ୍ୟାଧିକୁ ନାଶ କରୁଥିବା ମାତୃସ୍ୱରୂପିଣୀ (ମାତା ଯେପରି ସନ୍ତାନ ପ୍ରତି ଧ୍ୟାନରତ) ଗୁରୁଗୀତା ଆପଣମାନଙ୍କୁ କହୁଛି ତାହା ଅତ୍ୟନ୍ତ ଶ୍ରଦ୍ଧା ଏବଂ ପ୍ରସନ୍ନତା ପୂର୍ବକ ଶୁଣନ୍ତୁ ।।୭ ।।

ସଂସାର ରୂପକ   ବ୍ୟାଧି ନାଶ କାରୀ
ମାତୃ ରୂପି ଗୁରୁଗୀତା,
କହୁଅଛି ଶୁଣ   ଆହେ ଋଷିଗଣ
ବହି ଶ୍ରଦ୍ଧା ପ୍ରସନ୍ନତା ।

ପୂରା କୈଳାସଶିଖରେ ସିଦ୍ଧଗନ୍ଧର୍ବସେବିତେ ।
ତତ୍ର କଳ୍ପଲତାପୁଷ୍ପମନ୍ଦିରେଽତ୍ୟନ୍ତ ସୁନ୍ଦରେ ॥୮ ॥
ବ୍ୟାଘ୍ରାଜିନେ ସମାସିନଂ ଶୁକାଦି ମୁନି ବନ୍ଦିତମ୍ ।
ବୋଧୟନ୍ତଂ ପରଂ ତତ୍ତ୍ୱଂ ମଧ୍ୟେମୁନିଗଣଂ କ୍ୱଚିତ୍ ॥୯ ॥
ପ୍ରଣମ୍ରବଦନା ଶଶ୍ୱନ୍ନମସ୍କୁର୍ବନ୍ତମାଦରାତ୍ ।
ଦୃଷ୍ଟ୍ୱା ବିସ୍ମୟମାପନ୍ନା ପାର୍ବତୀ ପରିପୃଚ୍ଛତି ॥୧୦ ॥

ପ୍ରାଚୀନ କାଳରେ ସିଦ୍ଧ ଏବଂ ଗନ୍ଧର୍ବମାନଙ୍କ ନିବାସସ୍ଥଳ ରୂପକ କୈଳାସ ପର୍ବତର ଶିଖର ଦେଶରେ, କଳବୃକ୍ଷର ଫୁଲରେ ସୁସଜ୍ଜିତ ଅତ୍ୟନ୍ତ ସୁନ୍ଦର ମନ୍ଦିରରେ, ଶୁକାଦି ମୁନିମାନଙ୍କ ଦ୍ୱାରା ବନ୍ଦିତ ପରମ ତତ୍ତ୍ୱଜ୍ଞାନ ଦେଉଥିବା ଭଗବାନ ଶଙ୍କର ବାରମ୍ବାର ନମସ୍କାର କରୁଥିବା ଲକ୍ଷ୍ୟ କରି ଅତିଶୟ ନମ୍ରଶୀଳ ପାର୍ବତୀ ଆଶ୍ଚର୍ଯ୍ୟଚକିତ ହୋଇ ପଚାରିଲେ ॥୮,୯,୧୦ ॥

ସିଦ୍ଧ ବିଦ୍ୟାଧର   ସେବିତ ପବିତ୍ର
କୈଳାସ ଶୈଳ ଶିଖରେ,
କଳ୍ପବୃକ୍ଷ ପୁଷ୍ପେ   ସଜ୍ଜିତ ସୁନ୍ଦର
ମନ୍ଦିରେ ପୂରା କାଳରେ ।
ଶୁକ ଆଦି ମୁନି   ବନ୍ଦିତ ବେଷ୍ଟିତ
ଦିଅନ୍ତି ଯେ ତତ୍ତ୍ୱଜ୍ଞାନ,
ବ୍ୟାଘ୍ରାଜିନ ପରେ ହୋଇଣ ଆସିନ
ସେହି ପ୍ରଭୁ ପଞ୍ଚାନନ ।
ବାରମ୍ବାର ହସ୍ତ   ଯୋଡ଼ି ନମସ୍କାର
କରିବା ଦେଖି ପାର୍ବତୀ,
ଆଶ୍ଚର୍ଯ୍ୟ ଚକିତ   ହୋଇ ପଚାରିଲେ
ନମ୍ରଶୀଳ ହୋଇ ଅତି ।

**ପାର୍ବତ୍ୟୁବାଚ**

ଓଁ ନମୋ ଦେବ ଦେବେଶ ପରାତ୍ପର ଜଗଦ୍‌ଗୁରୋ ।
ତ୍ୱାଂ ନମସ୍କୁର୍ବତେ ଭକ୍ତ୍ୟା ସୁରାସୁରନରାଃ ସଦା ॥୧୧ ॥

ପାର୍ବତୀ କହିଲେ-ହେ ଓଁକାରର ଅର୍ଥ ସ୍ୱରୂପ, ଦେବତାମାନଙ୍କର ଦେବତା, ଶ୍ରେଷ୍ଠମାନଙ୍କର ଶ୍ରେଷ୍ଠ, ହେ ଜଗତ୍‌ଗୁରୁ! ଆପଣଙ୍କୁ ପ୍ରଣାମ । ଦେବ, ଦାନବ ଏବଂ ସମସ୍ତ ପ୍ରାଣୀ ଆପଣଙ୍କୁ ସର୍ବଦା ଭକ୍ତିପୂର୍ବକ ପ୍ରଣାମ କରିଥାଆନ୍ତି ॥୧୧ ॥

ନମୋ ନମସ୍ତେ ହେ ଓଁକାର ସ୍ୱରୂପ
ସୁରେଶ ଜଗତ୍‌ଗୁରୁ,
ସୁରାସୁର ନର ଚରଣେ ନମନ୍ତି
ସଦା ଭକତି ବଶରୁ ।

ବିଧିବିଷ୍ଣୁମହେନ୍ଦ୍ରାଦ୍ୟୈର୍ବନ୍ଦ୍ୟଃ ଖଲୁ ସଦା ଭବାନ୍ ।
ନମସ୍କରୋଷି କସ୍ମୈ ତ୍ୱଂ ନମସ୍କାରାଶ୍ରୟଃ କିଳ ॥୧୨ ॥

ଆପଣ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ରାଦି ଦେବତାମାନଙ୍କର ନମସ୍ୟ । ଏପରି ନମସ୍ୟର କେନ୍ଦ୍ରବିନ୍ଦୁ ହୋଇ ମଧ୍ୟ ଆପଣ କାହାକୁ ନମସ୍କାର କରୁଛନ୍ତି ॥୧୨ ॥

ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ସୁରାସୁରନର
ନମସ୍ୟ ହୋଇ ଆପଣ,
କାହା ରୂପ ଧ୍ୟାନେ ଚିନ୍ତି ନମସ୍କାର
କରୁଅଛନ୍ତି ଆପଣ ।

ଭଗବନ୍ ସର୍ବଧର୍ମଜ୍ଞୋଃ ବ୍ରତାନାଂ ବ୍ରତନାୟକମ୍ ।
ବ୍ରୁହି ମେ କୃପୟା ଶମ୍ଭୋ ଗୁରୁମାହାତ୍ମ୍ୟମୁତ୍ତମମ୍ ॥୧୩ ॥

ଭଗବାନ! ହେ ସର୍ବଧର୍ମଜ୍ଞ! ହେ ଶମ୍ଭୁ! ହେ ସମସ୍ତ ବ୍ରତର ଆରାଧ! ସେହି ଉତ୍ତମ ଗୁରୁ-ମାହାତ୍ମ୍ୟ ମୋତେ କୃପାକରି କୁହନ୍ତୁ ॥୧୩ ॥

ସର୍ବ ଧର୍ମ ଜ୍ଞାତା ଆହେ ଶିବ ଶମ୍ଭୁ
ବ୍ରତ ପତି ମୃତ୍ୟୁଞ୍ଜୟ,
କୃପାକରି କୁହ ସଂସାରରେ ଶ୍ରେଷ୍ଠ
ଗୁରୁ ମାହାତ୍ମ୍ୟ ବିଷୟ ।

ଇତି ସଂପ୍ରାର୍ଥିତଃ ଶଶ୍ୱନ୍ମହାଦେବୋ ମହେଶ୍ୱରଃ !
ଆନନ୍ଦଭରିତଃ ସ୍ୱାନ୍ତେ ପାର୍ବତୀମିଦମବ୍ରବୀତ୍ ॥୧୪ ॥

ପାର୍ବତୀ ଦେବୀଙ୍କ ଦ୍ୱାରା ଏହିପରି ବାରମ୍ବାର ପ୍ରାର୍ଥନା କରାଯିବାରୁ ମହାଦେବ ମହେଶ୍ୱର ଅତ୍ୟନ୍ତ ପ୍ରସନ୍ନ ହୋଇ ପାର୍ବତୀଙ୍କୁ ଏହି ପରି କହିଲେ ॥୧୪ ॥

ପାର୍ବତୀ ମାତାଙ୍କ ଏପରି ଆତୁର
ପ୍ରାର୍ଥନାରେ ମହେଶ୍ୱର,
ଅତ୍ୟନ୍ତ ପ୍ରସନ୍ନ ହୃଦୟରେ ହୋଇ,
କହିଲେ ସହର୍ଷ ଗୀର ।

## ଶ୍ରୀ ମହାଦେବ ଉବାଚ

ନ ବକ୍ତବ୍ୟମିଦଂ ଦେବି ରହସ୍ୟାତିରହସ୍ୟକମ୍ ।
ନ କସ୍ୟାପି ପୁରା ପ୍ରୋକ୍ତଂ ତ୍ୱଦ୍‌ଭକ୍ତ୍ୟର୍ଥଂ ବଦାମି ତତ୍ ।।୧୫ ।।

ଶ୍ରୀ ମହାଦେବ କହିଲେ : ହେ ଦେବୀ ! ଏହି ତତ୍ତ୍ୱ ଅତ୍ୟନ୍ତ ରହସ୍ୟମୟ, ତେଣୁ କହିବା ଉଚିତ ନୁହେଁ । ଏହା ପୂର୍ବରୁ କେହି ମଧ୍ୟ କହି ନାହିଁ । ତଥାପି ତୁମର ଭକ୍ତି ଭାବକୁ ଲକ୍ଷ୍ୟକରି ଏହି ରହସ୍ୟ ପ୍ରକାଶ କରୁଛି ।।୧୫ ।।

ଅତ୍ୟନ୍ତ ରହସ୍ୟ- ମୟ ଏହି ତତ୍ତ୍ୱ
କହିବା ନୁହେଁ ଉଚିତ,
ପୂର୍ବେ କେ କହିନି କହୁଛି ତଥାପି
ଭକ୍ତିରେ ହୋଇ ଦ୍ରବିତ ।

ମମ ରୂପାସି ଦେବି ତ୍ୱମତସ୍ତତ୍ କଥୟାମି ତେ ।
ଲୋକୋପକାରକଃ ପ୍ରଶ୍ନୋ ନ କେନାପି କୃତଃ ପୁରା ।।୧୬ ।।

ହେ ଦେବୀ ! ତୁମେ ମୋର ସ୍ୱରୂପ ଅଟ ଏଥିପାଇଁ ଏହି ରହସ୍ୟ ତୁମକୁ କହୁଛି । ତୁମର ଏହି ପ୍ରଶ୍ନ ଲୋକ-କଲ୍ୟାଣକାରକ । ଏଭଳି ପ୍ରଶ୍ନ ପୂର୍ବରୁ କେହି ପଚାରି ନ ଥିଲେ ।।୧୬ ।।

ମୋ ସ୍ୱରୂପ ତୁମେ ଗୁପତ ରହସ୍ୟ
ଲୋକୋପକାରକ ବୋଲି,
ପୂର୍ବେ କେ ପଚାରି ନ ଥିଲେ ଏ ପ୍ରଶ୍ନ
କହୁଛି ତୁମକୁ ଖୋଲି ।

ଯସ୍ୟ ଦେବେ ପରା ଭକ୍ତିର୍ଯଥା ଦେବେ ତଥା ଗୁରୌ ।
ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ ।।୧୬ ।।

ଯାହାଙ୍କର ଈଶ୍ୱରଙ୍କ ପ୍ରତି ଅତ୍ୟଧି ଭକ୍ତି ଥାଏ, ଯେ ଈଶ୍ୱରଙ୍କ ପରି ଗୁରୁଙ୍କଠାରେ ଭକ୍ତିଭାବ ରଖନ୍ତି, ସେପରି ମହାତ୍ମାମାନେ ହିଁ ଏଠାରେ ପ୍ରକାଶ କରାଯାଉଥିବା ତତ୍ତ୍ୱକୁ ବୁଝି ପାରିବେ ।।୧୭ ।।

ଦେବେ ପରା ଭକ୍ତି ରହିଛି ଯାହାର
ଦେବ ସମ ଗୁରୁ ଠାରେ,
ସେ ମହାତ୍ମା ମାନେ ବୁଝିବେ ଏ ତତ୍ତ୍ୱ
ବର୍ଣ୍ଣିତ ଯା' ଏହି ଠାରେ ।

ଯୋ ଗୁରୁଃ ସ ଶିବଃ ପ୍ରୋକ୍ତୋ ଯଃ ଶିବଃ ସ ଗୁରୁଃସ୍ମୃତଃ ।
ବିକଳ୍ପଂ ଯସ୍ତୁ କୁର୍ବୀତ ସ ନରୋ ଗୁରୁତଳ୍ପଗଃ ।।୧୮ ।।

ଯିଏ ଗୁରୁ ସେ ହିଁ ଶିବ, ଯେ ଶିବ ସେ ହିଁ ଗୁରୁ । ଦୁହିଁଙ୍କ ମଧରେ ଯେ ଅନ୍ତର ଦେଖେ ସେ ଗୁରୁପତ୍ନୀଗାମୀ ପାପୀ ସହିତ ସମାନ ।।୧୮ ।।

ଯିଏ ଗୁରୁ ସିଏ ଶିବ ଯିଏ ଶିବ
ଗୁରୁ ସାକ୍ଷାତ ହିଁ ସିଏ,
ଅନ୍ତର ଯେ ଦେଖେ ଗୁରୁପତ୍ନୀଗାମୀ
ପାପୀ ଜଗେ ସେ ବୋଲଏ ।

ବେଦଶାସ୍ତ୍ରପୂରାଣାନି ଚେତିହାସାଦିକାନି ଚ ।
ମନ୍ତ୍ରଯନ୍ତ୍ରବିଦ୍ୟାଦୀନି ମୋହ ନୋଚ୍ଚାଟନାଦିକମ୍ ।।୧୯ ।।
ଶୈବଶାକ୍ତାଗମାଦୀନି ହ୍ୟନ୍ୟେ ଚ ବହବୋ ମତାଃ ।
ଅପଭ୍ରଂଶାଃ ସମସ୍ତାନାଂ ଜୀବାନାଂ ଭ୍ରାନ୍ତଚେତସାମ୍ ।।୨୦ ।।
ଜପସ୍ତପୋବ୍ରତଂ ତୀର୍ଥଂ ଯଜ୍ଞୋ ଦାନଂ ତଥୈବ ଚ ।
ଗୁରୁତତ୍ତ୍ୱମବିଜ୍ଞାୟ ସର୍ବଂ ବ୍ୟର୍ଥଂ ଭବେତ୍ପ୍ରିୟେ ।।୨୧ ।।

ହେ ପ୍ରିୟେ ! ବେଦ, ଶାସ୍ତ୍ର, ପୁରାଣ, ଇତିହାସ ଆଦି; ମନ୍ତ୍ର, ଯନ୍ତ୍ର, ମୋହନ, ଉଚ୍ଚାଟନ ଆଦି ବିଦ୍ୟା, ଶୈବ, ଶାକ୍ତ, ଆଗମ ଏବଂ ଅନ୍ୟ ସମସ୍ତ ମତମତାନ୍ତର, ଏ ସମସ୍ତ କଥା ଗୁରୁତତ୍ତ୍ୱ ଜ୍ଞାନ ବିନା, ଭ୍ରମିତ ଚିତ୍ତ ଜୀବମାନଙ୍କୁ ପଥଭ୍ରଷ୍ଟ କରିଥାଏ । ଜପ, ତପ, ବ୍ରତ, ତୀର୍ଥ, ଯଜ୍ଞ, ଦାନ-ଏସବୁ ଗୁରୁତତ୍ତ୍ୱ ଜ୍ଞାନ ବିନା ବ୍ୟର୍ଥ ହୋଇଯାଏ ।।୧୯,୨୦,୨୧ ।।

ବେଦୋପନିଷଦ ଇତିହାସ ନୀତି
ଶାସ୍ତ୍ର ଦର୍ଶନ ପୁରାଣ,
ମନ୍ତ୍ର ଯନ୍ତ୍ର ବିଦ୍ୟା ତାରଣ ମାରଣ
ବିଦ୍ୱେଷଣ ଉଚ୍ଚାଟନ ।
ଶୈବ ଶାକ୍ତାଗମ ମତମତାନ୍ତର
ଯେତେଯେତେ କଥା ମାନ,
ଭ୍ରମେ ପଡ଼ି ଜୀବ ପଥହୁଡ଼େ ଯଦି
ନାହିଁ ଗୁରୁତତ୍ତ୍ୱଜ୍ଞାନ ।
ଜପ, ତପ, ବ୍ରତ ତୀର୍ଥ, ଯଜ୍ଞ, ଦାନ
ଶ୍ରେଷ୍ଠ କାର୍ଯ୍ୟ ସଂସାରର,
ଗୁରୁ ତତ୍ତ୍ୱଜ୍ଞାନ ଅଭାବେ ସମସ୍ତ
ହୁଅଇ ଆପେ ବେକାର ।

ଗୁରୁବୁଦ୍ଧ୍ୟାତ୍ମନୋ ନାନ୍ୟତ୍ ସତ୍ୟଂ ସତ୍ୟଂ ବରାନନେ ।
ତଲ୍ଲଭାର୍ଥଂ ପ୍ରଯତ୍ନସ୍ତୁ କର୍ତ୍ତବ୍ୟଶ୍ଚ ମନୀଷିଭିଃ ।।୨୨ ।।

ହେ ସୁମୁଖୀ ! ଆତ୍ମାରେ ଗୁରୁବୁଦ୍ଧି ବ୍ୟତିରକେ ଅନ୍ୟ କିଛି ସତ୍ୟ ନାହିଁ, ସତ୍ୟ ନାହିଁ । ଏଥିପାଇଁ ଏହି ଆତ୍ମଜ୍ଞାନକୁ ପ୍ରାପ୍ତ କରିବା ପାଇଁ ବୁଦ୍ଧିମାନ ଯତ୍ନଶୀଳ ହେବା ଉଚିତ ।।୨୨ ।।

ହେ ସୁମୁଖୀ ଶୁଣ ଗୁରୁବୁଦ୍ଧି ବିନା
ଅନ୍ୟ ସତ୍ୟ କିଛି ନାହିଁ,
ସେହି ଆତ୍ମଜ୍ଞାନ ପ୍ରାପ୍ତ କରିବାକୁ
ଯତ୍ନ କର ସେଥି ପାଇଁ ।

ଗୂଢ଼ାବିଦ୍ୟା ଜଗନ୍ମାୟା ଦେହଶ୍ଚାଜ୍ଞାନସମ୍ଭବଃ ।
ବିଜ୍ଞାନଂ ଯତ୍ପ୍ରସାଦେନ ଗୁରୁଶବ୍ଦେନ କଥ୍ୟତେ ।।୨୩ ।।

ଜଗତ ଗୂଢ଼ ଅବିଦ୍ୟାତ୍ମକ ମାୟା ଦ୍ୱାରା ଆଚ୍ଛାଦିତ ଏବଂ ଶରୀର ଅଜ୍ଞାନତାରୁ ଉତ୍ପନ୍ନ । ଏହି ବିଶ୍ଳେଷଣାତ୍ମକ ଜ୍ଞାନ ଯାହାଙ୍କ କୃପାପ୍ରସାଦରୁ ପ୍ରାପ୍ତ ହୁଏ ସେହି ଜ୍ଞାନକୁ ଗୁରୁ କହନ୍ତି ।।୨୩ ।।

ଗୂଢ଼ାବିଦ୍ୟା ମାୟା ଛାଦିତ ଜଗତ
ଅଜ୍ଞାନରୁ ଦେହ ଜାତ,
ବିଶ୍ଳେଷଣାତ୍ମକ ଏ ଜ୍ଞାନ ଯେ ଦିଏ
ସିଏ ଗୁରୁ ରୂପେ ଖ୍ୟାତ ।

ଦେହୀ ବ୍ରହ୍ମ ଭବେଦ୍ୟସ୍ମାତ୍ ତ୍ୱତ୍କୃପାର୍ଥଂବଦାମି ତତ୍ ।
ସର୍ବପାପବିଶୁଦ୍ଧାତ୍ମା ଶ୍ରୀଗୁରୋଃ ପାଦସେବନାତ୍ ।।୨୪ ।।

ଯେଉଁ ଗୁରୁଦେବଙ୍କ ପାଦସେବା କରିବା ଦ୍ୱାରା ମନୁଷ୍ୟ ସର୍ବପାପରୁ ମୁକ୍ତ ବିଶୁଦ୍ଧାତ୍ମା ହୋଇ ବ୍ରହ୍ମରୂପ ହୋଇଯାଏ ସେହି ଗୁରୁଦେବ ତୁମ ଉପରେ କିପରି କୃପା କରିବେ ତାହା କହୁଛି ।।୨୪ ।।

ଗୁରୁ ପଦ ସେବା କରି ନର ସର୍ବ
ପାପୁ ବିଶୁଦ୍ଧାତ୍ମା ହୁଏ,
କହୁଛି ସେ କଥା ଗୁରୁ କୃପା ଦ୍ୱାରା
ବ୍ରହ୍ମ ରୂପ କେହ୍ନେ ପାଏ ।

ଶୋଷଣଂ ପାପପଙ୍କସ୍ୟ ଦୀପନଂ ଜ୍ଞାନ ତେଜସଃ ।
ଗୁରୋଃ ପାଦୋଦକଂ ସମ୍ୟକ୍ ସଂସାରାର୍ଣ୍ଣବତାରକମ୍ ।।୨୫ ।।

ଶ୍ରୀଗୁରୁଦେବଙ୍କ ଚରଣାମୃତ ପାପରୂପକ ପଙ୍କକୁ ସମ୍ପୂର୍ଣ୍ଣରୂପେ ଶୋଷଣ କରିଥାଏ, ଜ୍ଞାନତେଜକୁ ଦୀପ୍ତ କରିଥାଏ ଏବଂ ସଂସାର ସାଗରରୁ ଉଦ୍ଧାର କରିଥାଏ ।।୨୫ ।।

ପାପପଙ୍କ ଶୋଷୀ ନିଶେଷ କରଇ
ଜ୍ଞାନ ତେଜ କରେ ଦୀପ୍ତ,
ଗୁରୁ ପାଦୋଦକ ସଂସାର ସାଗରୁ

ଉଦ୍ଧାର କରେ ସାକ୍ଷାତ ।

ଅଜ୍ଞାନମୂଳହରଣଂ ଜନ୍ମକର୍ମନିବାରକମ୍ ।
ଜ୍ଞାନବୈରାଗ୍ୟସିଦ୍ଧ୍ୟର୍ଥଂ ଗୁରୁପାଦୋଦକଂ ପିବେତ୍ ॥୨୬ ॥

ଅଜ୍ଞାନର ମୂଳୋତ୍ପାଟନକାରୀ, ବହୁ ଜନ୍ମର କର୍ମର ନିବାରଣକାରୀ, ଜ୍ଞାନ ଏବଂ ବୈରାଗ୍ୟର ସିଦ୍ଧକାରୀ ଶ୍ରୀଗୁରୁଦେବଙ୍କ ଚରଣାମୃତକୁ ପାନକରିବା ଉଚିତ ॥୨୬ ॥

ଅଜ୍ଞାନତା ମୂଳ ହରଣକାରକ
ଜନ୍ମକର୍ମ ନିବାରକ,
ପିଇବା ଉଚିତ ସିଦ୍ଧକାରୀ ଜ୍ଞାନ
ବୈରାଗ୍ୟ ଗୁରୁ ପାଦୁକ ।

ସ୍ୱଦେଶିକସ୍ୟୈବ ଚ ନାମକୀର୍ତ୍ତନମ୍
ଭବେଦନନ୍ତସ୍ୟ ଶିବସ୍ୟ କୀର୍ତ୍ତନମ୍ ।
ସ୍ୱଦେଶିକସ୍ୟୈବ ଚ ନାମଚିନ୍ତନମ୍
ଭବେଦନନ୍ତସ୍ୟ ଶିବସ୍ୟ ଚିନ୍ତନମ୍ ॥୨୭ ॥

ନିଜ ଗୁରୁଦେବଙ୍କ ନାମ କୀର୍ତ୍ତନ, ଅନନ୍ତ ସ୍ୱରୂପ ଭଗବାନ ଶିବଙ୍କର ହିଁ କୀର୍ତ୍ତନ । ନିଜ ଗୁରୁଦେବଙ୍କ ନାମ ଚିନ୍ତନ, ଅନନ୍ତ ସ୍ୱରୂପ ଭଗବାନ ଶିବଙ୍କର ହିଁ ଚିନ୍ତନ ॥୨୭ ॥

ଗୁରୁଦେବ ନାମ କୀର୍ତ୍ତନ କରିଲେ
ଶିବଙ୍କ କୀର୍ତ୍ତନ ହୁଏ,
ଗୁରୁଦେବ ନାମ ଚିନ୍ତନ ସାକ୍ଷାତ
ଶିବ ଚିନ୍ତନ ବୋଲାଏ ।

କାଶୀକ୍ଷେତ୍ରଂ ନିବାସଶ୍ଚ ଜାହ୍ନବୀ ଚରଣୋଦକମ୍ ।
ଗୁରୁର୍ବିଶ୍ୱେଶ୍ୱରଃ ସାକ୍ଷାତ୍ ତାରକଂ ବ୍ରହ୍ମନିଶ୍ଚୟଃ ॥୨୮ ॥

ଗୁରୁଦେବଙ୍କ ନିବାସସ୍ଥାନ କାଶୀକ୍ଷେତ୍ର । ଶ୍ରୀଗୁରୁଦେବଙ୍କ ଚରଣାମୃତ ଗଙ୍ଗାଜଳ । ଗୁରୁଦେବ ହିଁ ଭଗବାନ ବିଶ୍ୱନାଥ ଏବଂ ସାକ୍ଷାତ୍ ତାରକ ବ୍ରହ୍ମ ॥୨୮ ॥

ଗୁରୁଦେବ ଯହିଁ ନିବାସ କରନ୍ତି
ସାକ୍ଷାତ କାଶୀ ସେ ସ୍ଥାନ,
ପାଦୋଦକ ଗଙ୍ଗା- ଜଳ ଗୁରୁ ସ୍ୱୟଂ
ବିଶ୍ୱନାଥ ଭଗବାନ ।

ଗୁରୁସେବା ଗୟା ପ୍ରୋକ୍ତା ଦେହଃ ସ୍ୟାଦକ୍ଷୟୋ ବଟଃ ।
ତତ୍ପାଦଂ ବିଷ୍ଣୁପାଦଂ ସ୍ୟାତ୍ ତତ୍ର ଦତ୍ତମନସ୍ତତମ ॥୨୯ ॥

ଗୁରୁଦେବଙ୍କ ସେବା ହିଁ ତୀର୍ଥରାଜ ଗୟା କ୍ଷେତ୍ର । ଗୁରୁଦେବଙ୍କ ଶରୀର ଅକ୍ଷୟ ବଟବୃକ୍ଷ । ଗୁରୁଦେବଙ୍କ ଶ୍ରୀଚରଣ ଭଗବାନ ବିଷ୍ଣୁଙ୍କ ଶ୍ରୀଚରଣ । ସେଠାରେ ଲୟ ରଖିଲେ ମନ ତଦାକାର ହୋଇଯାଏ ।।୨୯ ।।

ଗୁରୁ ସେବା ତୀର୍ଥ　　　ରାଜ ଗୟାକ୍ଷେତ୍ର
ଅକ୍ଷୟ ବଟ ଶରୀର,
ଚରଣ ଦୁଇଟି　　ବିଷ୍ଣୁଙ୍କ ଚରଣ
ଲୟେ ହୁଏ ତଦାକାର ।

ଗୁରୁବକ୍ତ୍ରେ ସ୍ଥିତଂ ବ୍ରହ୍ମ ପ୍ରାପ୍ୟତେ ତତ୍ପ୍ରସାଦତଃ ।
ଗୁରୋର୍ଧ୍ୟାନଂ ସଦା କୁର୍ଯ୍ୟାତ୍ ପୁରୁଷଂ ସ୍ୱୈରିଣୀ ଯଥା ।।୩୦ ।।

ବ୍ରହ୍ମ ଶ୍ରୀଗୁରୁ ଦେବଙ୍କ ମୁଖାରବିନ୍ଦରେ(ବଚନାମୃତ) ବିଦ୍ୟମାନ ଥାଆନ୍ତି । ସେହି ବ୍ରହ୍ମ ତାଙ୍କର କୃପାପ୍ରସାଦରୁ ମିଳିଥାଏ । ଏଣୁ ଯେପରି ସ୍ୱେଚ୍ଛାଚାରୀ ସ୍ତ୍ରୀ ନିଜର ପ୍ରେମୀ ପୁରୁଷଙ୍କ ଚିନ୍ତନ କରିଥାଏ ସେହିପରି ସଦା ଗୁରୁଦେବଙ୍କୁ ଧ୍ୟାନ କରିବା ଉଚିତ ।।୩୦ ।।

ଗୁରୁ ମୁଖେ ବ୍ରହ୍ମ　　　ବିଦ୍ୟମାନ ତାଙ୍କ
କୃପାରୁ ବ୍ରହ୍ମ ମିଳନ୍ତି,
ପ୍ରେମୀକୁ ବିଟପୀ　　　ଚିନ୍ତେ ଯେହ୍ନେ ଚିନ୍ତ
ଗୁରୁଦେବେ ତେଣୁ ମତି ।

ସ୍ୱାଶ୍ରମଂ ଚ ସ୍ୱଜାତିଂ ଚ ସ୍ୱକୀର୍ତ୍ତିଂ ପୁଷ୍ଟି ବର୍ଧନମ୍ ।
ଏତତ୍ ସର୍ବଂ ପରିତ୍ୟଜ୍ୟ ଗୁରୁମେବ ସମାଶ୍ରୟେତ୍ ।।୩୧ ।।

ନିଜ ଆଶ୍ରମ(ବ୍ରହ୍ମଚର୍ଯ୍ୟାଶ୍ରମ ଆଦି), ଜାତି, କୀର୍ତ୍ତି(ପଦପ୍ରତିଷ୍ଠା), ପାଳନ-ପୋଷଣ ସବୁକୁ ତ୍ୟାଗ କରି ଗୁରୁଦେବଙ୍କଠାରେ ସମ୍ପୂର୍ଣ୍ଣ ରୂପେ ଆଶ୍ରୟ ନେବା ଉଚିତ ।।୩୧ ।।

ଜାତି କୀର୍ତ୍ତି ନିଜ　　　ଆଶ୍ରମ ପାଳନ
ପୋଷଣ ସବୁକୁ ଛାଡ଼ି,
ଗୁରୁଦେବଙ୍କର　　　ଆଶ୍ରୟରେ ତେଣୁ
ରୁହ ସଦାବେଳେ ଜଡ଼ି ।

ଗୁରୁବକ୍ତ୍ରେ ସ୍ଥିତା ବିଦ୍ୟା ଗୁରୁଭକ୍ତ୍ୟା ଚ ଲଭ୍ୟତେ ।
ତ୍ରୈଲୋକ୍ୟେ ସ୍ଫୁଟବକ୍ତାରୋ ଦେବର୍ଷିପିତୃମାନବାଃ ।।୩୨ ।।

ବିଦ୍ୟା ଗୁରୁଦେବଙ୍କ ମୁଖରେ ଥାଆନ୍ତି ଏବଂ ତାହା ଗୁରୁଙ୍କୁ ଭକ୍ତି କରିବା ଦ୍ୱାରା ପ୍ରାପ୍ତ ହୋଇଥାଏ । ଏହି ତତ୍ତ୍ୱ ତିନିଲୋକରେ ଦେବ, ଋଷି, ପିତୃ ଏବଂ ମାନବମାନଙ୍କ ଦ୍ୱାରା ସ୍ପଷ୍ଟ ରୂପେ କୁହାଯାଇଛି ।।୩୨ ।।

ଗୁରୁଙ୍କ ମୁଖରେ ବିଦ୍ୟା ବିରାଜଇ
ଗୁରୁ ଭକ୍ତିରେ ମିଳଇ,
ତୈଲୋକେ ଦେବତା ଋଷି ପିତୃ ନର
ସ୍ପଷ୍ଟ ରୂପେ ଛନ୍ତି କହି ।

ଗୁକାରଶ୍ଚାନ୍ଧକାରୋ ହି ରୁକାରସ୍ତେଜ ଉଚ୍ୟତେ ।
ଅଜ୍ଞାନଗ୍ରାସକଂ ବ୍ରହ୍ମ ଗୁରୁରେବ ନ ସଂଶୟଃ ।।୩୩ ।।

"ଗୁ" ଶବ୍ଦର ଅର୍ଥ ଅନ୍ଧକାର(ଅଜ୍ଞାନ) ଏବଂ "ରୁ" ଶବ୍ଦର ଅର୍ଥ ପ୍ରକାଶ(ଜ୍ଞାନ) । ଅଜ୍ଞାନାନ୍ଧକାରକୁ ନାଶ କରୁଥିବା ବ୍ରହ୍ମରୂପକ ଆଲୋକ ହିଁ ଗୁରୁ ଅଟନ୍ତି, ଏଥିରେ ତିଳେମାତ୍ର ସଂଶୟ ନାହିଁ ।।୩୩ ।।

'ଗୁ'-ଯେ ଅନ୍ଧକାର 'ରୁ' ଅର୍ଥ ଆଲୋକ
ଅଜ୍ଞାନ ଅନ୍ଧକାରକୁ,
ନାଶ କରୁଥିବା ବ୍ରହ୍ମାଲୋକ ଗୁରୁ
ସଂଶୟ ନାହିଁ ଏଥିକୁ ।

ଗୁକାରଶ୍ଚାନ୍ଧକାରସ୍ତୁ ରୁକାରସ୍ତନ୍ନିରୋଧକୃତ୍ ।
ଅନ୍ଧକାରବିନାଶିତ୍ୱାତ୍ ଗୁରୁରିତ୍ୟଭିଧୀୟତେ ।।୩୪ ।।

'ଗୁ' କାର ଅନ୍ଧକାର ଅଟେ ଏବଂ 'ରୁ' କାର ସେହି ଅନ୍ଧକାରର ନାଶକାରୀ । ଅଜ୍ଞାନ ରୂପକ ଅନ୍ଧକାରକୁ ନଷ୍ଟ କରୁଥିବା କାରଣରୁ ତାଙ୍କୁ "ଗୁରୁ" କୁହାଯାଏ ।।୩୪ ।।

'ଗୁ' କାର ଅନ୍ଧାର 'ରୁ'- ତା' ନାଶକାରୀ
ଅଜ୍ଞାନ ରୂପୀ ଅନ୍ଧାର,
ନାଶକରେ ଯିଏ ଗୁରୁ ନାମ ତାଙ୍କ
ସାରା ସଂସାରରେ ସାର ।

'ଗୁ' କାରଶ୍ଚ ଗୁଣାତୀତୋ ରୂପାତୀତୋ 'ରୁ' କାରକଃ ।
ଗୁଣରୂପବିହୀନତ୍ୱାତ୍ ଗୁରୁରିତ୍ୟଭିଧୀୟତେ ।।୩୫ ।।

'ଗୁ' କାର ହେଉଛି ଗୁଣାତୀତ ଆଉ 'ରୁ' କାର ହେଉଛି ରୁପାତୀତ । ଗୁଣ ଏବଂ ରୂପର ଉର୍ଦ୍ଧ୍ୱରେ ଥିବାରୁ ତାଙ୍କୁ "ଗୁରୁ" କୁହାଯାଏ ।।୩୫ ।।

ଗୁ-ଗୁଣ ଅତୀତ            ରୁ-ରୂପ ଅତୀତ
ଯେ ଉର୍ଦ୍ଧ୍ୱେ ଗୁଣ ରୂପରୁ,
ଚଉଦ ବ୍ରହ୍ମାଣ୍ଡେ            ଉଡ଼ଇ ପତାକା
ସେହି ଦିବ୍ୟ ନାମ ଗୁରୁ ।

ଗୁକାରଃ ପ୍ରଥମୋ ବର୍ଣ୍ଣୋ ମାୟାଦି ଗୁଣଭାସକଃ ।
ରୁକାରୋଽସ୍ତି ପରଂବ୍ରହ୍ମ ମାୟାଭ୍ରାନ୍ତିବିମୋଚକମ୍ ।।୩୬ ।।

(ଗୁରୁ ଶବ୍ଦର) ପ୍ରଥମ ଅକ୍ଷର 'ଗୁ' କାର ମାୟା ଆଦି ଗୁଣମାନଙ୍କର ଜନନୀ ଏବଂ ଦ୍ୱିତୀୟ ଅକ୍ଷର 'ରୁ' କାର ମାୟା ଭ୍ରମରୁ ମୁକ୍ତି ଦେଉଥିବା ପରଂବ୍ରହ୍ମ ।।୩୬ ।।

ଗୁ-କାର ମାୟାଦି            ଗୁଣଙ୍କ ଜନନୀ
ଶବ୍ଦର ବର୍ଣ୍ଣ ପ୍ରଥମ,
ଦ୍ୱିତୀୟ ରୁ-କାର            ମାୟା ଭ୍ରମୁ ମୁକ୍ତି
ଦାନକାରୀ ପରଂବ୍ରହ୍ମ ।

ସର୍ବଶ୍ରୁତି ଶିରୋରତ୍ନବିରାଜିତପଦାମ୍ବୁଜମ୍ ।
ବେଦାନ୍ତାର୍ଥପ୍ରବକ୍ତାରଂ ତସ୍ମାତ୍‌ସଂପୂଜୟେଦ୍ ଗୁରୁମ୍ ।।୩୭ ।।

ଗୁରୁ ସମସ୍ତ ଶ୍ରୁତି ରୂପକ ଶ୍ରେଷ୍ଠ ରତ୍ନରେ ସୁଶୋଭିତ ଚରଣକମଳ ଯୁକ୍ତ ଅଟନ୍ତି ଏବଂ ବେଦାନ୍ତ ଅର୍ଥର ପ୍ରବକ୍ତା ମଧ୍ୟ । ଏଣୁ ଶ୍ରୀଗୁରୁଦେବଙ୍କୁ ପୂଜା କରିବା ଉଚିତ ।।୩୭ ।।

ସର୍ବ ଶ୍ରୁତି ରୂପୀ            ରତ୍ନେ ସୁଶୋଭିତ
ଗୁରୁଙ୍କର ପାଦ ଦୁଇ,
ବେଦାନ୍ତ ପ୍ରବକ୍ତା            ଗୁରୁ ପଦେ ତେଣୁ
ପୂଜା କର ମନ ଦେଇ ।

ଯସ୍ୟ ସ୍ମରଣମାତ୍ରେଣ ଜ୍ଞାନମୁତ୍‌ପଦ୍ୟତେ ସ୍ୱୟମ୍ ।
ସଃ ଏବ ସର୍ବସମ୍ପତ୍ତିଃ ତସ୍ମାତ୍ ସଂପୂଜୟେଦ୍ ଗୁରୁମ୍ ।।୩୮ ।।

ଯାହାଙ୍କୁ ସ୍ମରଣ କରିବା ମାତ୍ରେ ଜ୍ଞାନ ଆପେ ଆପେ ପ୍ରକଟ ହୋଇଥାଏ ଆଉ ସେହିଁ ସମସ୍ତ (ଶମ, ଦମ ଆଦି) ସମ୍ପଦାରୂପ ଅଟନ୍ତି । ଏଣୁ ଶ୍ରୀଗୁରୁଦେବଙ୍କୁ ପୂଜା କରିବା ଉଚିତ ।।୩୮ ।।

ସର୍ବ ସମ୍ପଦର ସ୍ୱରୂପ ଶ୍ରୀଗୁରୁ
ସ୍ମରଣେ ନାମ ତାଙ୍କର,
ହୃଦେ ଜ୍ଞାନ ଆପେ ହୁଅଇ ପ୍ରକଟ
ପୂଜ ଗୁରୁଙ୍କ ପୟର ।

ସଂସାରବୃକ୍ଷମାରୁଢ଼ାଃ ପତନ୍ତି ନରକାର୍ଣ୍ଣବେ ।
ଯସ୍ତାନୁଦ୍ଧରତେ ସର୍ବାନ୍ ତସ୍ମୈ ଶ୍ରୀଗୁରବେ ନମଃ ।।୩୯ ।।

ସଂସାର ରୂପକ ବୃକ୍ଷରେ ଚଢ଼ିଥିବା ଲୋକମାନେ ନରକରୂପୀ ସାଗରରେ ପତିତ ହୁଅନ୍ତି । ସେ ସମସ୍ତଙ୍କୁ ଉଦ୍ଧାର କରୁଥିବା ଶ୍ରୀଗୁରୁଦେବଙ୍କୁ ନମସ୍କାର ।।୩୯ ।।

ସଂସାର ବୃକ୍ଷରେ ଚଢ଼ି ଯେଉଁ ନର
ପଡ଼େ ନରକ ସାଗରେ,
ତାହାର ଉଦ୍ଧାର କାରକ ଗୁରୁଙ୍କ
ନମସ୍କାର ଚରଣରେ ।

ଏକ ଏବ ପରୋ ବନ୍ଧୁର୍ବିଷମେ ସମୁପସ୍ଥିତେ ।
ଗୁରୁଃ ସକଳଧର୍ମାତ୍ମା ତସ୍ମୈ ଶ୍ରୀଗୁରବେ ନମଃ ।।୪୦ ।।

ଅତି ବିକଟ ପରିସ୍ଥିତିରେ କେବଳ ସେ ହିଁ ଏକମାତ୍ର ପରମ ବନ୍ଧୁ ଅଟନ୍ତି ଏବଂ ସମସ୍ତ ଧର୍ମର ଆତ୍ମସ୍ୱରୂପ ସେହି ସଦ୍ ଗୁରୁଦେବଙ୍କୁ ନମସ୍କାର କରୁଛି ।।୪୦ ।।

ବିଷମ କାଳର ପରମ ବାନ୍ଧବ
ଆତ୍ମା ସମସ୍ତ ଧର୍ମର,
ସେହି ଦିବ୍ୟରୂପୀ ମହାନ ଗୁରୁଙ୍କ

ଚରଣରେ ନମସ୍କାର ।

ଭବାରଣ୍ୟପ୍ରବିଷ୍ଟସ୍ୟ ଦିଙ୍ଗ୍ ମୋହଭ୍ରାନ୍ତଚେତସଃ ।
ଯେନ ସନ୍ଦର୍ଶିତଃ ପନ୍ଥାଃ ତସ୍ମୈ ଶ୍ରୀଗୁରବେ ନ ।।୪୧ ।।

ସଂସାରରୂପୀ ଅରଣ୍ୟରେ ପ୍ରବେଶ କରି ଦିଗହରା ଏବଂ ଚିତ୍ତଭ୍ରମିତ ହୋଇଥିବା ମଣିଷକୁ ମାର୍ଗଦର୍ଶନ କରୁଥିବା ଶ୍ରୀଗୁରୁଦେବଙ୍କୁ ନମସ୍କାର ।।୪୧ ।।

ଭବାରଣ୍ୟେ ପଶି ଦିଗହରା ଚିତ୍ତ
ଭ୍ରମିତ ମାନବଗଣେ,
ସୁମାର୍ଗ ଦର୍ଶନ କରାନ୍ତି ଯେ ଗୁରୁ
ପ୍ରଣାମ ତାଙ୍କ ଚରଣେ ।

ତାପତ୍ରୟାଗ୍ନି ତପ୍ତାନାଂ ଅଶାନ୍ତପ୍ରାଣିନାଂ ଭୁବି ।
ଗୁରୁରେବ ପରା ଗଙ୍ଗା ତସ୍ମୈ ଶ୍ରୀଗୁରବେ ନମଃ ।।୪୨ ।।

ଏହି ପୃଥିବୀରେ ତ୍ରିବିଧ ତାପ (ଆଧି-ବ୍ୟାଧି-ଉପାଧି) ରୂପକ ଅଗ୍ନିରେ ଜଳୁଥିବା ଅଶାନ୍ତ ପ୍ରାଣୀମାନଙ୍କ ପାଇଁ ଏକମାତ୍ର ବିଶୁଦ୍ଧ ଗଙ୍ଗାଜଳ ସ୍ୱରୂପୀ ଗୁରୁଦେବଙ୍କୁ ନମସ୍କାର ।।୪୨ ।।

ତ୍ରିବିଧ ତାପରେ ତପ୍ତାଶାନ୍ତ ପ୍ରାଣୀ
ଗଣେ ଦିଅନ୍ତି ଯେ ଶାନ୍ତି,
ଶୁଦ୍ଧ ଗଙ୍ଗାଜଳ ସ୍ୱରୂପୀ ସେ ଗୁରୁ
ପୟରେ ମୋର ପ୍ରଣତି ।

ସପ୍ତସାଗରପର୍ଯ୍ୟନ୍ତଂ ତୀର୍ଥ ସ୍ନାନ ଫଳଂତୁ ଯତ୍ ।
ଗୁରୁପାଦପୟୋବିନ୍ଦୋଃ ସହସ୍ରାଂଶେନ ତତ୍‌ଫଳମ୍ ।।୪୩ ।।

ସାତ ସମୁଦ୍ର ପର୍ଯ୍ୟନ୍ତ ସମସ୍ତ ତୀର୍ଥରେ ସ୍ନାନ କଲେ ଯେଉଁ ଫଳ ମିଳିଥାଏ ତାହା ଶ୍ରୀଗୁରୁଦେବଙ୍କ ଚରଣାମୃତର ଗୋଟିଏ ବିନ୍ଦୁର ହଜାରେ ଭାଗରୁ ଏକଭାଗରୁ ସେତିକି ପୁଣ୍ୟ ମିଳେ ।।୪୩ ।।

ଯେ ପୁଣ୍ୟ ମିଳଇ ସ୍ନାନ କଲେ ସପ୍ତ
ସାଗରର ତୀର୍ଥ ଜଳେ,

ଶ୍ରୀଗୁରୁ ଚରଣା-          ମୃତ ବିନ୍ଦୁଏର
ସହସ୍ରାଂଶରୁ ତା' ମିଳେ ।

ଶିବେ ରୁଷ୍ଟେ ଗୁରୁସ୍ତ୍ରାତା ଗୁରୌ ରୁଷ୍ଟେ ନ କଶ୍ଚ ନ ।
ଲବ୍‌ଧ୍ୱା କୁଳଗୁରୁଂ ସମ୍ୟଗ୍‌ଗୁରୁମେବ ସମାଶ୍ରୟତେ୍ ।।୪୪ ।।

ଯଦି ଭଗବାନ ଶିବ ଅସନ୍ତୁଷ୍ଟ ହୋଇଯିବେ ତେବେ ଗୁରୁଦେବ ରକ୍ଷାକର୍ତା ଅଟନ୍ତି କିନ୍ତୁ ଗୁରୁଦେବ ଅସନ୍ତୁଷ୍ଟ ହେଲେ କେହି ରକ୍ଷା କରିପାରିବେ ନାହିଁ । ତେଣୁ ଗୁରୁଦେବଙ୍କୁ ପ୍ରାପ୍ତ କରି ସର୍ବଦା ତାଙ୍କର ଚରଣାଶ୍ରିତ ହୋଇ ରହିବା ଉଚିତ ।।୪୪ ।।

ଶିବ ରୁଷ୍ଟ ହେଲେ          ଗୁରୁ ରକ୍ଷାକର୍ତ୍ତା
ଗୁରୁ ରୁଷ୍ଟେ ରକ୍ଷା ନାହିଁ,
ତେଣୁ ସଦାଗୁରୁ          ଆଶ୍ରୟେ ରହିବ
ଗୁରୁ କୃପା ପ୍ରାପ୍ତ ହୋଇ ।

ଗୁକାରଂ ଚ ଗୁଣାତୀତଂ ରୁକାରଂ ରୂପବର୍ଜିତମ୍ ।
ଗୁଣାତୀତମରୂପଂ ଚ ଯୋ ଦଦ୍ୟାତ୍ ସ ଗୁରୁ ସ୍ମୃତଃ ।।୪୫ ।।

'ଗୁରୁ' ଶବ୍ଦର 'ଗୁ' ଅକ୍ଷର ଗୁଣାତୀତ ଅବସ୍ଥାକୁ ବୁଝାଏ ଏବଂ 'ରୁ' ଅକ୍ଷର ରୂପରହିତ ଅବସ୍ଥାକୁ ବୁଝାଏ । ଏହି ଦୁଇ ଅବସ୍ଥା (ଗୁଣାତୀତ ଓ ରୂପାତୀତ)କୁ ଯିଏ ପ୍ରଦାନ କରିଥା'ନ୍ତି ସେ ହିଁ ଗୁରୁ ।।୪୫ ।।

ଗୁରୁ ଶବ୍ଦର 'ଗୁ'          ବର୍ଣ୍ଣ ଗୁଣାତୀତ
'ରୁ' ବର୍ଣ୍ଣ ରୂପ ରହିତ,
ଏ ଦୁଇ ଅବସ୍ଥା          ଦାନେ ଯେ ସମର୍ଥ
ଗୁରୁ ରୂପେ ସିଏ ଖ୍ୟାତ ।

ଅତ୍ରିନେତ୍ରଃ ଶିବଃ ସାକ୍ଷାତ୍ ଦ୍ୱିବାହୁଶ୍ଚ ହରିଃ ସ୍ମୃତଃ ।
ଯୋଽଚତୁର୍ବଦନୋ ବ୍ରହ୍ମା ଶ୍ରୀଗୁରୁଃ କଥିତଃ ପ୍ରିୟେ ।।୪୬ ।।

ହେ ପ୍ରିୟେ ! ଗୁରୁ ହେଉଛନ୍ତ ତ୍ରିନେତ୍ରରହିତ (ଦୁଇ ନେତ୍ରଯୁକ୍ତ) ସାକ୍ଷାତ୍ ଶିବ, ଦୁଇ ହାତଯୁକ୍ତ ବିଷ୍ଣୁ ଏବଂ ଏକ ମୁଖଯୁକ୍ତ ବ୍ରହ୍ମା ।।୪୬ ।।

ତ୍ରିନେତ୍ର ରହିତ ସ୍ୱୟଂଶିବ ଗୁରୁ
ଦ୍ୱିବାହୁ ବିଶିଷ୍ଟ ବିଷ୍ଣୁ,
ଚତୁର୍ମୁଖ ନୁହଁ ଏକମୁଖ ବ୍ରହ୍ମା
ଗୁରୁ ସାକ୍ଷାତ୍ ଅଚ୍ଚିଷ୍ଟୁ ।

ଦେବକିନ୍ନରଗନ୍ଧର୍ବାଃ ପିତୃଯକ୍ଷାସ୍ତୁ ତୁମ୍ବୁରୁଃ ।
ମୁନୟୋଽପି ନ ଜାନନ୍ତି ଗୁରୁଶୁଶ୍ରୁଷଣେ ବିଧିମ୍ ।।୪୭ ।।

ଦେବ, କିନ୍ନର, ଗନ୍ଧର୍ବ, ପିତୃ, ଯକ୍ଷ, ତୁମ୍ବୁରୁ (ଏକ ପ୍ରକାର ଗନ୍ଧର୍ବ) ଏବଂ ମୁନିମାନେ ମଧ୍ୟ ଗୁରୁସେବା ଜାଣନ୍ତି ନାହିଁ ।।୪୭ ।।

କିନ୍ନର ଗନ୍ଧର୍ବ ଦେବ ପିତୃ ଯକ୍ଷ
ତୁମ୍ବୁରୁ ଓ ମୁନିଗଣ,
ଗୁରୁ ସେବା ବିଧି କେହି ନ ଜାଣନ୍ତି

ତାର୍କିକାଶ୍ଛାନ୍ଦସାଶ୍ଚୈବ ଦେବଜ୍ଞାଃ କର୍ମଠାଃ ପ୍ରିୟେ ।
ଲୌକିକାସ୍ତେ ନ ଜାନନ୍ତି ଗୁରୁତତ୍ତ୍ୱଂ ନିରାକୁଳମ୍ ।।୪୮ ।।

ହେ ପ୍ରିୟେ ! ତର୍କଶାସ୍ତ୍ରୀ, ବୈଦିକ ଜ୍ଞାନୀ, ଜ୍ୟୋତିଷଶାସ୍ତ୍ରୀ, କର୍ମକାଣ୍ଡୀ ପଣ୍ଡିତ ତଥା ସାଧାରଣ ମନୁଷ୍ୟ ବିଶୁଦ୍ଧ ଗୁରୁତତ୍ତ୍ୱକୁ ଜାଣନ୍ତି ନାହଁ ।।୪୮ ।।

ତର୍କଶାସ୍ତ୍ରୀ ଦେବ ଜ୍ଞାନୀ କର୍ମକାଣ୍ଡୀ
ପଣ୍ଡିତ ଜ୍ୟୋତିଷ ଜ୍ଞାତା,
ହେ ପ୍ରିୟେ ମାନବ କେହି ନ ଜାଣନ୍ତି
ଗୁରୁତତ୍ତ୍ୱ ଗଭୀରତା ।

ମହାହଂକାରଗର୍ବେଣ ତପୋବିଦ୍ୟାବଳେନ ଚ ।
ଭ୍ରମନ୍ତ୍ୟେତସ୍ମିନ୍ ସଂସାରେ ଘଟୀଯନ୍ତ୍ରଂ ତଥା ପୁନଃ ।।୪୯ ।।

ତପ ଓ ବିଦ୍ୟାବଳ ତଥା ମହା ଅହଂକାର କାରଣରୁ ଜୀବ ଏହି ସଂସାରରେ ଘଟୀକା ଯନ୍ତ୍ର ସଦୃଶ ବାରମ୍ବାର ଘୂରୁଥାଏ ॥୪୯ ॥

ମହା ଅହଂକାର    ତପ ବିଦ୍ୟାବଳ
ଗର୍ବ କାରଣୁ ସଂସାରେ,
ଘଟୀଯନ୍ତ୍ର ପ୍ରାୟ    ଭ୍ରମୁଥା'ନ୍ତି ଜୀବେ
ବାରମ୍ବାର କାଳାନ୍ତରେ ।

ଯଜ୍ଞିନୋଽପି ନ ମୁକ୍ତାଃ ସ୍ୟୁଃ ନ ମୁକ୍ତାଃ ଯୋଗିନସ୍ତଥା ।
ତାପସା ଅପି ନୋ ମୁକ୍ତା ଗୁରୂତତ୍ତ୍ୱାତ୍‌ପରାଙ୍‌ମୁଖାଃ ॥୫୦ ॥

ଗୁରୁତତ୍ତ୍ୱ ପ୍ରତି ବିମୁଖ ଯାଜ୍ଞିକ, ଯୋଗୀ, ତପସ୍ୱୀ ଆଦି କେହି ମଧ୍ୟ ମୁକ୍ତି ପାଇପାରିବେ ନାହିଁ ॥୫୦ ॥

ଯାଜ୍ଞିକ ତପସ୍ୱୀ    ଯୋଗୀ ଓ ତପସ୍ୱୀ
ଗୁରୁତତ୍ତ୍ୱରୁ ବିମୁଖ,
ଯେତେ ପ୍ରାଣୀ ଛନ୍ତି    କେହି ନ ଦେଖନ୍ତି
ମୁକତି ପଥର ମୁଖ ।

ନ ଚ ମୁକ୍ତାସ୍ତୁ ଗନ୍ଧର୍ବାଃ ପିତୃ ଯକ୍ଷାସ୍ତୁ ଚାରଣାଃ ।
ଋଷୟଃ ସିଦ୍ଧଦେବାଦ୍ୟାଃ ଗୁରୁସେବାପରାଙ୍‌ମୁଖାଃ ॥୫୧ ॥

ଗୁରୁ ସେବାରେ ବିମୁଖ ଥିବା ଗନ୍ଧର୍ବ, ପିତୃ, ଯକ୍ଷ, ଚାରଣ, ଋଷି, ସିଦ୍ଧ ଏବଂ ଦେବତାମାନେ ମଧ୍ୟ ମୁକ୍ତ ହୋଇ ପାରିବେ ନାହିଁ ॥୫୧ ॥

ଗନ୍ଧର୍ବ ଚାରଣ    ପିତୃ ଯକ୍ଷ ଋଷି
ସିଦ୍ଧ ସୁରାସୁର ଯେତେ,
ଗୁରୁ ସେବା ପ୍ରତି    ବିମୁଖ ଯେ କେବେ
ମୁକ୍ତି ପାଏନା ଜଗତେ ।

ଇତି ଶ୍ରୀ ସ୍କାନ୍ଦୋତ୍ତରଖଣ୍ଡେ ଉମାମହେଶ୍ୱରସମ୍ବାଦେ ଶ୍ରୀ ଗୁରୁଗୀତାୟାଂ

ପ୍ରଥମୋଧ୍ୟାୟଃ ।

ଏହିପରି ଭାବରେ ସ୍କାନ୍ଦୋତ୍ତର ଖଣ୍ଡରେ ଶିବ-ପାର୍ବତୀ

କଥୋପକଥନର ଶ୍ରୀଗୁରୁଗୀତାର ପ୍ରଥମ ଅଧ୍ୟାୟ ସମାପ୍ତ ହେଲା ।

## ଅଥ ଦ୍ୱିତୀୟୋଽଧ୍ୟାୟଃ

ବ୍ରହ୍ମାନନ୍ଦଂ ପରମସୁଖଦଂ କେବଳଂ ଜ୍ଞାନମୂର୍ତ୍ତିମ୍
ଦ୍ୱନ୍ଦାତୀତଂ ଗଗନସଦୃଶଂ ତତ୍ତ୍ୱମସ୍ୟାଦିଲକ୍ଷ୍ୟମ୍ ।
ଏକଂ ନିତ୍ୟଂ ବିମଳମଚଳଂ ସର୍ବଧୀସାକ୍ଷିଭୂତମ୍
ଭାବାତୀତଂ ତ୍ରିଗୁଣରହିତଂ ସଦ୍‌ଗୁରୁଂ ତଂ ନମାମି ।।୫୨ ।।

ଯେ ବ୍ରହ୍ମାନନ୍ଦସ୍ୱରୂପ, ପରମ ସୁଖଦାୟକ, ଯିଏ କେବଳ ଜ୍ଞାନସ୍ୱରୂପ, (ସୁଖ-ଦୁଃଖ, ଶୀତ-ଗ୍ରୀଷ୍ମ ଆଦି) ଦ୍ୱନ୍ଦ୍ୱରହିତ, ଆକାଶ ପରି ସୂକ୍ଷ୍ମ ଏବଂ ସର୍ବବ୍ୟାପକ, ତତ୍ତ୍ୱମସି ଆଦି

ମହାବାକ୍ୟମାନଙ୍କର ଲକ୍ଷ୍ୟାର୍ଥ, ଏକ, ନିତ୍ୟ, ମଳରହିତ (ଶୁଦ୍ଧ), ଅଚଳ, ବୁଦ୍ଧିସମୂହର ସାକ୍ଷୀ, ଭାବଠୁ ଉର୍ଦ୍ଧ୍ୱରେ, ସତ୍ତ୍ୱ, ରଜ ଏବଂ ତମୋ ତିନି ଗୁଣରୁ ଉର୍ଦ୍ଧ୍ୱରେ ରହିଥା'ନ୍ତି ସେହି ଶ୍ରୀସଦ୍‌ଗୁରୁଦେବଙ୍କୁ ମୁଁ ନମସ୍କାର କରୁଛି ।।୫୨ ।।

ଗୁରୁ ଜ୍ଞାନମୂର୍ତ୍ତି ବ୍ରହ୍ମାନନ୍ଦରୂପୀ
ପରମସୁଖଦାୟକ,
ଦ୍ୱନ୍ଦ୍ୱର ଉର୍ଦ୍ଧ୍ୱରେ ଆକାଶ ପ୍ରାୟେକ
ସୂକ୍ଷ୍ମ ଓ ସର୍ବବ୍ୟାପକ ।୫୨କ ।
ତତ୍ତ୍ୱମସ୍ୟାଦିର ଲକ୍ଷ୍ୟାର୍ଥ ଅଚଳ
ଏକ ସେ ବିମଳ ନିତ୍ୟ,
ସର୍ବ ବୁଦ୍ଧି ସାକ୍ଷୀ ତ୍ରିଗୁଣର ଉର୍ଦ୍ଧ୍ୱେ
ଭାବାଭାବର ଅତୀତ ।୫୨ଖ ।
ଏପରି ସଦ୍‌ଗୁରୁ ଯା'ର ସ୍ପର୍ଶେ ଶିଷ୍ୟ
ଜୀବନ ପାଏ ନିସ୍ତାର,
ସର୍ବସୁଖଦାୟୀ ତାଙ୍କରି ଚରଣେ
କରୁଅଛି ନମସ୍କାର ।୫୨ଗ ।

ଗୁରୂପଦିଷ୍ଟମାର୍ଗେଣ ମନଃ ଶୁଦ୍ଧିଂ ତୁ କାରୟେତ ।
ଅନିତ୍ୟଂ ଖଣ୍ଡୟେତ୍ସର୍ବଂ ଯତ୍କିଂଚିଦାତ୍ମଗୋଚରମ୍ ।୫୩ ।

ଶ୍ରୀଗୁରୁଦେବଙ୍କ ଉପଦେଶାନୁସାରେ ମନକୁ ଶୁଦ୍ଧ କରିବା ଉଚିତ । ଯଦି କୌଣସି ଭୌତିକ ପଦାର୍ଥ ନିଜ ଇନ୍ଦ୍ରିୟମାନଙ୍କୁ ଆକର୍ଷିତ କରେ ତେବେ ତା'ର ଖଣ୍ଡନ (ନିରାକରଣ) କରିବା ଉଚିତ ।।୫୩ ।।

ଶ୍ରୀଗୁରୁଦେବଙ୍କ ଉପଦେଶ ମତେ
ଶୁଦ୍ଧ ମନକୁ କରିବ,
ଅନିତ୍ୟ ପଦାର୍ଥ କଲେ ଆକର୍ଷିତ
ତାହାରେ ଦୃଢ଼େ ଖଣ୍ଡିବ ।୫୩ ।

କିମତ୍ର ବହୁନୋକ୍ତେନ ଶାସ୍ତ୍ରକୋଟିଶତୈରପି ।

ଦୁର୍ଲଭା ଚିତ୍ତବିଶ୍ରାନ୍ତିଃ ବିନା ଗୁରୁକୃପାଂ ପରାମ ॥୫୪ ॥

ଏଠାରେ ଅଧିକ କହି ଲାଭ କ'ଣ ? ଶ୍ରୀଗୁରୁଦେବଙ୍କ ପରମକୃପା ବିନା କୋଟି କୋଟି ଶାସ୍ତ୍ର ଅଧ୍ୟୟନ ଦ୍ୱାରା ମଧ୍ୟ ଚିତ୍ତର ବିଶାନ୍ତ ଦୁର୍ଲଭ ॥୫୪ ॥

ଅଧିକେ କି ଲାଭ ଗୁରୁକୃପା ବିନା
କୋଟି ଶାସ୍ତ୍ର ଅଧୟନେ,
ପ୍ରାପ୍ତ ହୁଏ ନାହିଁ ଦୁର୍ଲଭ ବିଶ୍ରାନ୍ତି
ଶିଷ୍ୟର ଅଶାନ୍ତ ମନେ ।୫୪ ।

କରୁଣାଖଡ୍‌ଗପାତେନ ଛିତ୍ତ୍ୱା ପାଶାଷ୍ଟକଂ ଶିଶୋଃ ।
ସମ୍ୟଗାନନ୍ଦଜନକଃ ସଦ୍‌ଗୁରୁ ସୋଽଭିଧୀୟତେ ॥୫୫ ॥
ଏବଂ ଶ୍ରୁତ୍ୱା ମହାଦେବି ଗୁରୁନିନ୍ଦାଂ କରୋତି ଯଃ ।
ସ ଯାତି ନରକାନ୍ ଘୋରାନ୍ ଯାବଚ୍ଚନ୍ଦ୍ରଦିବାକରୌ ॥୫୬ ॥

କରୁଣାରୂପୀ ଖଡ୍ଗରେ ପ୍ରହାର କରିବା ଦ୍ୱାରା ଶିଷ୍ୟର ସଂଶୟ, ଦୟା, ଭୟ, ସଙ୍କୋଚ, ନିନ୍ଦା, ପ୍ରତିଷ୍ଠା, କୁଳାଭିମାନ ଏବଂ ସମ୍ପତ୍ତି ଆଦି ଆଠ ଫାଶକୁ ଛେଦନ କରି ଯିଏ ନିର୍ମଳ ଆନନ୍ଦ ପ୍ରଦାନ କରିଥାନ୍ତି ତାଙ୍କୁ ସଦ୍‌ଗୁରୁ କୁହାଯାଏ । ହେ ଦେବୀ ! ଏହା ଶୁଣି ମଧ୍ୟ ଯିଏ ଗୁରୁନିନ୍ଦା କରିଥାଏ ସେ (ମନୁଷ୍ୟ) ସୂର୍ଯ୍ୟଚନ୍ଦ୍ର ଥିବା ପର୍ଯ୍ୟନ୍ତ ଘୋର ନରକରେ ପତିତ ହୁଏ ॥୫୫, ୫୬ ॥

କରୁଣା କୃପାଣ ଆଘାତେ ଛେଦି ଯେ
ସଂଶୟାଦି ଆଠ ଫାଶ,
ନିର୍ମଳ ଆନନ୍ଦ ଦିଅନ୍ତି ସଦ୍ଗୁରୁ
ସେ ହିଁ ଶିଶ୍ୟ ହୃଦୟେଶ ।୫୫ ।
ଏ ସବୁ ଶ୍ରବଣ କରି ମହାଦେବୀ !
ଯେ ଗୁରୁ ନିନ୍ଦା କରଇ,
ଆକାଶରେ ସୂର୍ଯ୍ୟ ଚନ୍ଦ୍ର ଥିବା ଯାଏଁ
ଘୋର ନରକେ ପଡ଼ଇ ।୫୬ ।

ଯାବତ୍ କଳ୍ପାନ୍ତକୋ ଦେହସ୍ତାବଦ୍ଦେବି ଗୁରୁଂ ସ୍ମରେତ୍ ।
ଗୁରୁଲୋପୋ ନ କର୍ତ୍ତବ୍ୟଃ ସ୍ୱଚ୍ଛନ୍ଦୋ ଯଦି ବା ଭବେତ ।।୫୭ ।।

ହେ ଦେବୀ ! ଦେହ କଳ୍ପ ପର୍ଯ୍ୟନ୍ତ ରହିଲେ ମଧ୍ୟ ଶ୍ରୀଗୁରୁଦେବଙ୍କୁ ସ୍ମରଣ କରିବା ଉଚିତ ଏବଂ ଆତ୍ମଜ୍ଞାନୀ ହେବା ପରେ ମଧ୍ୟ (ସ୍ୱଚ୍ଛନ୍ଦ ଅର୍ଥାତ୍ ନିଜ ସ୍ୱରୂପରେ ସ୍ଥିତି ପ୍ରାପ୍ତି ପରେ ମଧ୍ୟ) ଶିଷ୍ୟ ଗୁରୁଙ୍କ ଶରଣ ତ୍ୟାଗ କରିବା ଉଚିତ ନୁହେଁ ।।୫୭ ।।

ହେ ଦେବୀ ଶରୀର କଳ୍ପଜୀବୀ ହେଉ
ହେଉ ଶିଷ୍ୟ ଆତ୍ମଜ୍ଞାନୀ,
ଗୁରୁଙ୍କ ଶରଣ ତ୍ୟାଗି ଶିଷ୍ୟ କେବେ
ନ ପାଳଟୁ ଅଭିମାନୀ ।୫୭ ।

ହୁଂକାରେଣ ନ ବକ୍ତବ୍ୟଂ ପ୍ରାଜ୍ଞଶିଷ୍ୟୈଃ କଦାଚନ ।
ଗୁରୋରଗ୍ରେ ନ ବକ୍ତବ୍ୟମସତ୍ୟଂ ତୁ କଦାଚନ ।।୫୮ ।।

ଶ୍ରୀଗୁରୁଦେବଙ୍କ ସମ୍ମୁଖରେ ପ୍ରଜ୍ଞାବାନ ଶିଷ୍ୟ କେବେ ଅହଂକାର ପୂର୍ଣ୍ଣ ଶବ୍ଦ(ମୁଁ ଏପରି କଲି...ସେପରି କଲି) ଏବଂ ଅସତ୍ୟ କହିବା ଉଚିତ ନୁହେଁ ।।୫୮ ।।

ଅହଂକାରପୂର୍ଣ୍ଣ ବାକ୍ୟ କହିବନି
ଗୁରୁଙ୍କ ସମ୍ମୁଖେ କେବେ,
ପ୍ରଜ୍ଞାବାନ ଶିଷ୍ୟ କହିବନି ମିଥ୍ୟା
ଗୁରୁ ଆଗେ ଯେବେ ଥିବେ ।୫୮ ।

ଗୁରୁଂ ତ୍ୱଂକୃତ୍ୟ ହୁଂକୃତ୍ୟ ଗୁରୁସାନ୍ନିଧ ଭାଷଣଃ ।
ଅରଣ୍ୟେ ନିର୍ଜଳେ ଦେଶେ ସମ୍ଭବେଦ୍ ବ୍ରହ୍ମରାକ୍ଷସଃ ।।୫୯ ।।

ଗୁରୁଦେବଙ୍କ ସମ୍ମୁଖରେ ଯିଏ ଅହଂକାର ପୂର୍ଣ୍ଣ ଶବ୍ଦ ପ୍ରୟୋଗ କରେ ଅଥବା ଗୁରୁଦେବଙ୍କୁ "ତୁ" ବୋଲି ସମ୍ବୋଧନ କରେ ସେ ନିର୍ଜଳ ଦେଶର ଅରଣ୍ୟରେ ବ୍ରହ୍ମରାକ୍ଷସ ରୂପେ ଜନ୍ମ ନିଏ ।।୫୯ ।।

ଗୁରୁଙ୍କୁ କହେ ଯେ 'ତୁ' କାର ବଚନ
ଦର୍ପେ କହେ ସମ୍ମୁଖରେ,
ନିର୍ଜଳ ଦେଶର ଅରଣ୍ୟେ ଜନ୍ମଇ

ବ୍ରହ୍ମରାକ୍ଷସ ରୂପରେ ।୫୯ ।

ଅଦ୍ୱୈତଂ ଭାବୟେନ୍ନିତ୍ୟଂ ସର୍ବାବସ୍ଥାସୁ ସର୍ବଦା ।
କଦାଚିଦପି ନୋ କୁର୍ଯ୍ୟାଦଦ୍ୱୈତଂ ଗୁରୁସନ୍ନିଧୌ ।।୬୦ ।।

ସର୍ବଦା ସବୁ ଅବସ୍ଥାରେ ଅଦ୍ୱୈତ ଭାବ ରଖିବା ଉଚିତ, କିନ୍ତୁ ଗୁରୁଦେବଙ୍କ ସହ କଦାପି ଅଦ୍ୱୈତ ଭାବ ରଖିବା ଉଚିତ ନୁହେଁ ।।୬୦ ।।

ସବୁ ଅବସ୍ଥାରେ ସର୍ବଦା ଅଦ୍ୱୈତ
ଭାବନା ମନେ ପୋଷିବ,
ଗୁରୁ ଯେଣୁ ଗୁରୁ ଅଦ୍ୱୈତ ଭାବନା
ତାଙ୍କ ସହ ନରଖିବ ।୬୦ ।

ଦୃଶ୍ୟବିସ୍ମୃତିପର୍ଯ୍ୟନ୍ତଂ କୁର୍ଯ୍ୟାଦ୍ ଗୁରୁପଦାର୍ଚ୍ଚନମ୍ ।
ତାଦୃଶସ୍ୟୈବ କୈବଲ୍ୟଂ ନ ଚ ତଦ୍‌ବ୍ୟତିରେକିଣଃ ।।୬୧ ।।

ଦୃଶ୍ୟପ୍ରପଞ୍ଚର ବିସ୍ମୃତି ନ ହେଲା ପର୍ଯ୍ୟନ୍ତ ଗୁରୁଦେବଙ୍କ ପବିତ୍ର ଚରଣାରବିନ୍ଦର ପୂଜା-ଅର୍ଚ୍ଚନା କରିବା ଉଚିତ । ଏପରି କରୁଥିବା ବ୍ୟକ୍ତିଙ୍କୁ ହିଁ କୈବଲ୍ୟପଦ ପ୍ରାପ୍ତି ହୋଇଥାଏ, ଏହାର ବିପରୀତ ଆଚରଣକାରୀଙ୍କୁ କୈବଲ୍ୟ ପଦ ପ୍ରାପ୍ତି ହୋଇ ନ ଥାଏ ।।୬୧ ।।

ଦୃଶ୍ୟପ୍ରପଞ୍ଚର ବିସ୍ମୃତି ନ ହେଲା
ଯାଏଁ ଗୁରୁପଦ ସେବା,
କରେ ଯେ କୈବଲ୍ୟ ପଦ ପ୍ରାପ୍ତ ହୁଏ
ଅନ୍ୟେ ଦୁର୍ଭାଗ୍ୟା କହିବା ।୬୧ ।

ଅପି ସଂପୂର୍ଣ୍ଣ ତତ୍ତ୍ୱଜ୍ଞୋ ଗୁରୁତ୍ୟାଗୀ ଭବେଦ୍ୟଦା ।
ଭବତ୍ୟେବ ହି ତସ୍ୟାନ୍ତକାଳେ ବିକ୍ଷେପମୁତ୍କଟମ୍ ।।୬୨ ।।

ସମ୍ପୂର୍ଣ୍ଣ ତତ୍ତ୍ୱଜ୍ଞ ମଧ୍ୟ ଯଦି ଗୁରୁଙ୍କୁ ତ୍ୟାଗ କରିଦିଏ ତେବେ ମୃତ୍ୟୁ ସମୟରେ ତା’ର ମହାନ୍ ବିକ୍ଷେପ ଘଟିଥାଏ ।।୬୨ ।।

ସମ୍ପୂର୍ଣ୍ଣ ତତ୍ତ୍ୱଜ୍ଞ ଗୁରୁ ତ୍ୟାଗ ଯଦି
ଜୀବନରେ କରି ଦିଏ ।
ଅନ୍ତ ସମୟରେ ଉତ୍କଟ ବିକ୍ଷେପ

ରୋଗରେ ଆକ୍ରାନ୍ତ ହୁଏ ।୬୨ ।

ଗୁରୌ ସତି ସ୍ୱୟଂ ଦେବି ପରେଷାଂ ତୁ କଦାଚନ ।
ଉପଦେଶଂ ନ ବୈ କୁର୍ଯ୍ୟାତ୍ ତଦା ଚେଦ୍ରାକ୍ଷସୋ ଭବେତ୍ ।।୬୩ ।।

ହେ ଦେବୀ ! ଗୁରୁଙ୍କ ଉପସ୍ଥିତିରେ କେବେ କାହାକୁ ଉପଦେଶ ଦେବ ନାହିଁ । ଏପରି ଉପଦେଶ ଦେଉଥିବା ବ୍ୟକ୍ତି ବ୍ରହ୍ମରାକ୍ଷସ ହୋଇଥାଏ ।।୬୩ ।।

ଗୁରୁ ସମ୍ମୁଖରେ ଉପଦେଶ ଦେବୀ
ଦେବ ନାହିଁ ଅନ୍ୟ କା'ରେ,
ରାକ୍ଷସ ଯୋନିରେ ଜନ୍ମ ହୁଏ ତା'ର
ଏପରି କାର୍ଯ୍ୟ ଯେ କରେ ।୬୩ ।

ନ ଗୁରୋରାଶ୍ରମେ କୁର୍ଯ୍ୟାତ୍ ଦୁଷ୍ପାନଂ ପରିସର୍ପଣମ୍ ।
ଦୀକ୍ଷା ବ୍ୟାଖ୍ୟା ପ୍ରଭୁତ୍ୱାଦି ଗୁରୋରାଜ୍ଞାଂ ନ କାରୟେତ ।।୬୪ ।।

ଗୁରୁଙ୍କ ଆଶ୍ରମରେ ନିଶା ପାନ କରିବା, ଟହଲ ମାରିବା ଉଚିତ ନୁହେଁ । ଦୀକ୍ଷା ଦେବା, ବର୍ଣ୍ଣନା କରିବା, ପ୍ରଭୁତ୍ୱ ଦେଖାଇବା ଏବଂ ଗୁରୁଙ୍କୁ ଆଜ୍ଞା ଦେବା, ଏସବୁ ନିଷିଦ୍ଧ ଅଟେ ।।୬୪ ।।

ଗୁରୁ ଆଶ୍ରମରେ ନିଶା ଦ୍ରବ୍ୟ ପାନ
ମନା ଟହଲ ମାରିବା,
ଦୀକ୍ଷା ବ୍ୟାଖ୍ୟା ଦେବା ପ୍ରଭୃତ୍ୱ ଦେଖାଇ
ଗୁରୁଙ୍କୁ ଆଦେଶ ଦେବା ।୬୪ ।

ନୋପାଶ୍ରମଂ ଚ ପର୍ଯ୍ୟଙ୍କଂ ନ ଚ ପାଦପ୍ରସାରଣମ୍ ।
ନାଂଗଭୋଗାଦିକଂ କୁର୍ଯ୍ୟାନ୍ନ ଲୀଲାମପରାମପି ।।୬୫ ।।

ଗୁରୁଙ୍କ ଆଶ୍ରମରେ ନିଜର କୁଡ଼ିଆ, ପଲଙ୍କ ତିଆରି କରିବା ଉଚିତ ନୁହେଁ । ଗୁରୁଙ୍କ ସମ୍ମୁଖରେ ଗୋଡ଼ ଲମ୍ୱାଇବା, ଶରୀରାଭ୍ୟାସ ଏବଂ ଅନ୍ୟାନ୍ୟ ଲୀଳା କରିବା ଉଚିତ ନୁହେଁ ।।୬୫ ।।

ଗୁରୁ ଆଶ୍ରମରେ କୁଡ଼ିଆ ପଲଙ୍କ

ମନା ସ୍ୱାର୍ଥେ ତିଆରିବା,
ଗୁରୁ ଆଗେ ଗୋଡ଼ ଲମ୍ବାଇ ବସିବା
ଅଙ୍ଗ ଭଙ୍ଗି ଦେଖାଇବା ।୬୫ ।

ଗୁରୂଣାଂ ସଦସଦ୍ୱାପି ଯଦୁକ୍ତଂ ତନ୍ନ ଲଂଘୟେତ୍ ।
କୁର୍ବନ୍ନାଜ୍ଞାଂ ଦିବାରାତ୍ରୌ ଦାସବନ୍ନିବସେଦ୍ ଗୁରୌ ।।୬୬ ।।

ଗୁରୁଙ୍କର ବାକ୍ୟ ସତ୍ୟ ହେଉ ବା ମିଥ୍ୟା, ତାହା କେବେହେଲେ ଉଲ୍ଲଂଘନ କରିବା ଉଚିତ ନୁହେଁ । ଦିବାନିଶି ଗୁରୁଦେବଙ୍କ ଆଜ୍ଞାପାଳନ କରିବା ସହିତ ତାଙ୍କର ଦାସ ହୋଇ ରହିବା ଉଚିତ ।।୬୬ ।।

ଗୁରୁଙ୍କର ବାକ୍ୟ ସତ୍ୟ ହେଉ ମିଥ୍ୟା
ତାହାକୁ ଲଙ୍ଘିବ ନାହିଁ,
ଗୁରୁ ଆଜ୍ଞା ଦିବା ନିଶି ପାଳୁଥିବ
ଦାସ ହୋଇ ପାଶେ ରହି ।୬୬ ।

ଅଦତ୍ତଂ ନ ଗୁରୌର୍ଦ୍ରବ୍ୟମୁପଭୁଂଜୀତ କର୍ହିଚିତ୍ ।
ଦତ୍ତଂ ଚ ରଙ୍କବଦ୍ ଗ୍ରାହ୍ୟଂ ପ୍ରାଣୋଽପ୍ୟେତେନ ଲଭ୍ୟତେ ।।୬୭ ।।

ଯେଉଁ ପଦାର୍ଥ ଗୁରୁଦେବ ପ୍ରଦାନ କରି ନାହାନ୍ତି ତା'ର କଦାପି ଉପଯୋଗ କରିବା ଉଚିତ ନୁହେଁ । ଗୁରୁଦେବ ପ୍ରଦାନ କରୁଥିବା ପଦାର୍ଥକୁ ରଙ୍କ ପରି ଗ୍ରହଣ କରିବା ଉଚିତ । ଏହାଦ୍ୱାରା ପ୍ରାଣ ମଧ୍ୟ ପ୍ରାପ୍ତ ହୋଇପାରେ ।।୬୭ ।।

ଗୁରୁ ଦତ୍ତ ଦ୍ରବ୍ୟ ରଙ୍କ ପ୍ରାୟ ନେବ
ପ୍ରାଣ ହୁଏ ତହୁଁ ପ୍ରାପ୍ତ
ଅନୁଚିତ ତା'ର ଉପଯୋଗ ତେଣୁ
ଛୁଇଁବନି ଯା' ଅଦତ୍ତ ।୬୭ ।

ପାଦୁକାସନଶଯ୍ୟାଦି ଗୁରୁଣା ଯଦଭିଷ୍ଟିତମ୍ ।
ନମସ୍କୁର୍ବୀତ ତତ୍ସର୍ବଂ ପାଦାଭ୍ୟାଂ ନ ସ୍ପୃଶେତ୍ କ୍ୱଚିତ୍ ।।୬୮ ।।

ଗୁରୁଙ୍କ ଦ୍ୱାରା ବ୍ୟବହୃତ ହେଉଥିବା ପାଦୁକା (କଠଉ), ଆସନ, ବିଛଣା ଆଦି ପଦାର୍ଥକୁ ନମସ୍କାର କରିବା ଉଚିତ ଏବଂ ସେ ସବୁକୁ ଗୋଡ଼ରେ କଦାପି ସ୍ପର୍ଶ କରିବା ଉଚିତ ନୁହେଁ ।।୬୮ ।।

ବିଛଣା ପାଦୁକା ଆସନ ଗୁରୁ ଯା'
କରୁଥାନ୍ତି ବ୍ୟବହାର,
ପାଦେ ସ୍ପର୍ଶ କେବେ ନ କରି କରିବ
ଭକତିରେ ନମସ୍କାର ।୬୮ ।

ଗଚ୍ଛତଃ ପୃଷ୍ଠତୋ ଗଚ୍ଛେତ୍ ଗୁରୁଚ୍ଛାୟାଂ ନ ଲଂଘୟେତ୍ ।
ନୋଲ୍‌ବଣଂ ଧାରୟେଦ୍‌ବେଶଂ ନାଳଂକାରାଂସ୍ତତୋଲ୍‌ବଣାନ୍ ।।୬୯ ।।

ପଦଯାତ୍ରା ସମୟରେ ଗୁରୁଦେବଙ୍କ ପଛରେ ଚାଲିବା ଉଚିତ, ତାଙ୍କର ଛାୟାକୁ ମଧ୍ୟ ଉଲଂଘନ କରିବା ଉଚିତ ନୁହେଁ । ଗୁରୁଦେବଙ୍କ ସମ୍ମୁଖରେ ଦାମୀ ବେଶଭୂଷା, ଅଳଙ୍କାର ଆଦି ଧାରଣ କରିବା ଉଚିତ ନୁହେଁ ।।୬୯ ।।

ଯାତ୍ରା କାଳେ ଗୁରୁ ପଛେ ଛାୟାକୁ ବି
ନ ଅତିକ୍ରମୀ ଚାଲିବ,
ଦାମୀ ବେଶଭୂଷା ଦାମୀ ଅଳଙ୍କାର
ସମ୍ମୁଖରେ ନ ପିନ୍ଧିବ ।୬୯ ।

ଗୁରୁନିନ୍ଦାକରଂ ଦୃଷ୍ଟ୍ୱା ଧାବୟେଦଥ ବାସୟେତ୍ ।
ସ୍ଥାନଂ ବା ତତ୍‌ପରିତ୍ୟଜ୍ୟ ଜିହ୍ୱାଚ୍ଛେଦାକ୍ଷମୋ ଯଦି ।।୭୦ ।।

ଗୁରୁଙ୍କର ନିନ୍ଦା କରୁଥିବା ବ୍ୟକ୍ତିର ଜିହ୍ୱା କାଟିବାକୁ ଯଦି ଅସମର୍ଥ ତେବେ ତାକୁ ସେ ସ୍ଥାନରୁ ବିଦା କରିଦିଅ । ଯଦି ସେ ସେଠାରୁ ନ ଯାଉଛି ତେବେ ସ୍ୱୟଂ ସେ ସ୍ଥାନ ତ୍ୟାଗ କରି ଚାଲିଯିବା ଉଚିତ ।।୭୦ ।।

ଗୁରୁ ନିନ୍ଦୁକର ପାରୁ ନାହଁ ଛେଦି
ଜିହ୍ୱା ଯଦି ତଡ଼ିଦିଅ,
ତଡ଼ି ନପାରିଲେ ନିଜେ ସେହି ସ୍ଥାନ
ପରିତ୍ୟାଗୀ ଚାଲିଯାଅ ।୭୦ ।

ମୁନିଭିଃ ପନ୍ନଗୈର୍ବାପି ସୁରୈର୍ବା ଶାପିତୋ ଯଦି ।
କାଳମୃତ୍ୟୁଭୟାଦ୍ୱାପି ଗୁରୁଃ ସଂତ୍ରାତି ପାର୍ବତି ।।୭୧ ।।

ହେ ପାର୍ବତୀ ! ମୁନି, ପନ୍ନଗ ଏବଂ ଦେବତାମାନଙ୍କ ଅଭିଶାପ ତଥା ମୃତ୍ୟୁ ସମୟରେ କାଳ ଭୟରୁ ଶିଷ୍ୟଙ୍କୁ ଗୁରୁଦେବ ହିଁ ରକ୍ଷା କରିପାରନ୍ତି ।।୭୧ ।।

ହେ ପାର୍ବତୀ ! ମୁନି ପନ୍ନଗ ଦେବତା
ଅଭିଶାପ ମୃତ୍ୟୁଭୟ,
କବଳରୁ ଗୁରୁ ଏକା ଉଦ୍ଧାରିଣ
ଦିଅନ୍ତି ଶିଷ୍ୟେ ଅଭୟ ।୭୧ ।

ବିଜାନନ୍ତି ମହାବାକ୍ୟଂ ଗୁରୋଶ୍ଚରଣ ସେବୟା ।
ତେ ବୈ ସଂନ୍ୟାସିନଃ ପ୍ରୋକ୍ତା ଇତରେ ବେଶଧାରିଣଃ ।।୭୨ ।।

ଗୁରୁଦେବଙ୍କ ଶ୍ରୀଚରଣର ସେବା କରି ଯିଏ ମହାବାକ୍ୟର ଅର୍ଥ ବୁଝିପାରନ୍ତି ସେ ହିଁ ପ୍ରକୃତ ସନ୍ନ୍ୟାସୀ, ଅନ୍ୟମାନନେ ତ କେବଳ ବେଶଧାରୀ ଅଟନ୍ତି ।।୭୨ ।।

ଗୁରୁ ପଦ ସେବୀ ମହାବାକ୍ୟ ଅର୍ଥ
ବୁଝିପାରଇ ଯେ ନର,
ବାସ୍ତବ ସନ୍ୟାସୀ ତାହାଙ୍କୁ କହନ୍ତି
ଅନ୍ୟ ସବୁ ବେଶଧର ।୭୨ ।

ନିତ୍ୟଂ ବ୍ରହ୍ମ ନିରାକାରଂ ନିର୍ଗୁଣଂ ବୋଧୟେତ୍ ପରମ୍ ।
ଭାସୟନ୍ ବ୍ରହ୍ମଭାବଂ ଚ ଦୀପୋ ଦୀପାନ୍ତରଂ ଯଥା ।।୭୩ ।।

ଯିଏ ନିତ୍ୟ, ନିର୍ଗୁଣ, ନିରାକାର, ପରମ ବ୍ରହ୍ମଙ୍କର ଜ୍ଞାନ ଦେଇଥା'ନ୍ତି, ଯେପରି ଗୋଟିଏ ଦୀପ ଆଉ ଗୋଟିଏ ଦୀପକୁ ପ୍ରଜ୍ୱଳିତ କରିଥାଏ ସେହିପରି ଶିଷ୍ୟମାନଙ୍କଠାରେ ବ୍ରହ୍ମଭାବ ପ୍ରକଟିତ କରାଇଥା'ନ୍ତି, ସେ ଗୁରୁ ଅଟନ୍ତି ।।୭୩ ।।

ନିତ୍ୟ ନିରାକାର ନିର୍ଗୁଣ ପରମ
ବ୍ରହ୍ମଜ୍ଞାନ ଯେ ଦିଅନ୍ତି,
ଦୀପଦୀପାନ୍ତର ପ୍ରାୟ ସେହିଗୁରୁ

ଶିଷ୍ୟେ ଜ୍ୟୋତି ପ୍ରକାଶନ୍ତି ।୭୩।

ଗୁରୁପ୍ରସାଦତଃ ସ୍ୱାତ୍ମନ୍ୟାତ୍ମାରାମନିରୀକ୍ଷଣାତ୍ ।
ସମତା ମୁକ୍ତି ମାର୍ଗେଣ ସ୍ୱାତ୍ମଜ୍ଞାନଂ ପ୍ରବର୍ତ୍ତତେ ।।୭୪ ।।

ଶ୍ରୀ ଗୁରୁଦେବଙ୍କ କୃପାରୁ ଶିଷ୍ୟ ନିଜ ଭିତରେ ହିଁ ଆତ୍ମାନନ୍ଦ ଲାଭ କରି ସମତା ଓ ମୁକ୍ତି ମାର୍ଗରେ ଆତ୍ମଜ୍ଞାନ ଉପଲବ୍ଧି କରିଥାଏ ।।୭୪ ।।

ଗୁରୁ କୃପା ଫଳେ ଶିଷ୍ୟ ନିଜ ମଧ୍ୟେ
ଆତ୍ମାନନ୍ଦ ସୁଖ ପାଏ,
ସମତା ମୁକତି ମାର୍ଗେ ଆତ୍ମଜ୍ଞାନ
ଉପଲବ୍ଧି କରି ଥାଏ ।୭୪ ।

ସ୍ଫଟିକେ ସ୍ଫାଟିକଂ ରୂପଂ ଦର୍ପଣେ ଦର୍ପଣୋ ଯଥା ।
ତଥାତ୍ମନି ଚିଦାକାରମାନନ୍ଦଂ ସୋଽହମିତ୍ୟୁତ ।।୭୫ ।।

ଯେପରି ସ୍ଫଟିକ ମଣି ମଧ୍ୟରେ ସ୍ଫଟିକ ମଣି ତଥା ଦର୍ପଣ ମଧ୍ୟରେ ଦର୍ପଣ ଦେଖାଯାଇଥାଏ ସେହିପରି ଆତ୍ମାରେ ଯେଉଁ ଚିତ୍ ଏବଂ ଆନନ୍ଦମୟ ଦେଖାଯାଏ ତାହା ମୁଁ ଅଟେ ।।୭୫ ।।

ସ୍ଫଟିକେ ସ୍ଫଟିକ ଦର୍ପଣେ ଦର୍ପଣ
ଦେଖାଯାଅଇ ଯେସନ,
ଆତ୍ମା ମଧ୍ୟେ ସ୍ଥିତ ଚିଦାନନ୍ଦରୂପେ
ଆବୋରିଛି ମୁହିଁ ସ୍ଥାନ ।୭୫ ।

ଅଙ୍ଗୁଷ୍ଠମାତ୍ରଂ ପୁରୁଷଂ ଧ୍ୟାୟେଚ୍ଚ ଚିନ୍ମୟଂ ହୃଦି ।
ତତ୍ର ସ୍ଫୁରତି ଯୋ ଭାବଃ ଶୃଣୁ ତତ୍କଥୟାମି ତେ ।।୭୬ ।।

ହୃଦୟ ମଧ୍ୟରେ ଅଙ୍ଗୁଳି ପରିମାଣର ଚୈତନ୍ୟପୁରୁଷଙ୍କ ଧ୍ୟାନ କରିବା ଉଚିତ । ସେଠାରେ ଯେଉଁ ଭାବ ସ୍ଫୁରିତ ହୁଏ ତାହା ମୁଁ ତୁମକୁ କହୁଛି, ଶୁଣ ।।୭୬ ।।

ଅଙ୍ଗୁଷ୍ଠ ପ୍ରମାଣ ଚୈତନ୍ୟ ପୁରୁଷ

ହୃଦୟରେ କଲେ ଧ୍ୟାନ,
ଯେଉଁ ଭାବ ସ୍ଫୁରେ ଅନ୍ତର ମଧ୍ୟରେ
କହୁଛି ସେ କଥା ଶୁଣ ।୭୬ ।

ଅଜୋଽହମମରୋଽହଂ ଚ ହ୍ୟାନାଦିନିଧନୋହ୍ୟହମ୍ ।
ଅବିକାରଶ୍ଚିଦାନନ୍ଦୋ ହ୍ୟଣିୟାନ୍ ମହତୋ ମହାନ ।।୭୭ ।।

ମୁଁ ଅଜନ୍ମା, ଅମର, ମୋର ଆଦି ନାହିଁ କି ଅନ୍ତ ନାହିଁ । ମୁଁ ନିର୍ବିକାର, ଚିଦାନନ୍ଦ । ମୁଁ ଅଣୁଠାରୁ ଛୋଟ ଓ ବିରାଟଠାରୁ ମଧ୍ୟ ବିରାଟ ।।୭୭ ।।

ଅଜନ୍ମା ଅମର ଆଦି ଅନ୍ତ ହୀନ
ନିର୍ବିକାର ଚିଦାନନ୍ଦ
ଅଣୁ ଠାରୁ ଛୋଟ ବିରାଟୁ ବିରାଟ
ମୁହିଁ ଟି ପରମାନନ୍ଦ ।୭୭ ।

ଅପୂର୍ବମପରଂ ନିତ୍ୟଂ ସ୍ୱୟଂ ଜ୍ୟୋତିର୍ନିରାମୟମ୍ ।
ବିରଜଂ ପରମାକାଶଂ ଧ୍ରୁବମାନନ୍ଦମବ୍ୟୟମ୍ ।।୭୮ ।।
ଅଗୋଚରଂ ତଥାଽଗମ୍ୟଂ ନାମରୂପବିବର୍ଜିତମ୍ ।
ନିଃଶବ୍ଦଂ ତୁ ବିଜାନୀୟାସ୍ୱଭାବାଦ୍ ବ୍ରହ୍ମ ପାର୍ବତି ।।୭୯ ।।

ହେ ପାର୍ବତୀ, ବ୍ରହ୍ମଙ୍କୁ ସ୍ୱଭାବତଃ ଅପୂର୍ବ, ଅଦ୍ୱିତୀୟ, ନିତ୍ୟ, ଜ୍ୟୋତିସ୍ୱରୂପ, ନୀରୋଗ, ନିର୍ମଳ, ପରମ ଆକାଶସ୍ୱରୂପ, ଅଚଳ, ଆନନ୍ଦ ସ୍ୱରୂପ, ଅବିନାଶୀ, ଅଗମ୍ୟ, ଅଗୋଚର, ନାମ-ରୂପରହିତ ତଥା ନିଃଶବ୍ଦ ବୋଲି ଜାଣିବା ଉଚିତ ।।୭୮, ୭୯ ।।

ସ୍ୱଭାବରେ ବ୍ରହ୍ମ ଅଦ୍ୱିତୀୟ ନିତ୍ୟ
ଜ୍ୟୋତି ସ୍ୱରୂପ ନିର୍ମଳ,
ଆକାଶ ସ୍ୱରୂପ ଅପୂର୍ବ ନୀରୋଗ
ପରମାନନ୍ଦ ଅଚଳ ।୭୮।
ନାମ ରୂପହୀନ ନିଃଶବ୍ଦ ଅଗମ୍ୟ

ଅବିନାଶୀ ଅଗୋଚର,

ହେ ପାର୍ବତୀ ! ବ୍ରହ୍ମ ସ୍ୱରୂପ ଏପରି

ହୃଦେ ଏ ରୂପ ସୁମର ।୭୯।

ଯଥା ଗନ୍ଧସ୍ୱଭାବତ୍ୱଂ କର୍ପୂରକୁସୁମାଦିଷୁ ।
ଶୀତୋଷ୍ଣତ୍ୱସ୍ୱଭାବତ୍ୱଂ ତଥା ବ୍ରହ୍ମଣି ଶାଶ୍ୱତମ୍ ।।୮୦ ।।

ଯେପରି କର୍ପୂର, ପୁଷ୍ପ ଇତ୍ୟାଦିରେ ସୁଗନ୍ଧ, ଅଗ୍ନିରେ ଉଷ୍ଣତା ଏବଂ ଜଳରେ ଶୀତଳତା ସ୍ୱାଭାବିକ ଭାବେ ସୃଷ୍ଟି, ସେହିପରି ବ୍ରହ୍ମରେ ଶାଶ୍ୱତତା ମଧ୍ୟ ସ୍ୱଭାବସିଦ୍ଧ ଅଟେ ।।୮୦ ।।

ସୁଗନ୍ଧ କର୍ପୂର ପୁଷ୍ପେ ସ୍ୱାଭାବିକ

ସ୍ୱାଭାବିକ ଶୀତୋଷ୍ଣତ୍ୱ,

ଶାଶ୍ୱତତା ଗୁଣ ବ୍ରହ୍ମର ସେପରି

ସ୍ୱଭାବିକ ବିଶେଷତଃ ।୮୦ ।

ଯଥା ନିଜସ୍ୱଭାବେନ କୁଣ୍ଡଳକଟକାଦୟଃ ।
ସୁବର୍ଣ୍ଣତ୍ୱେନ ତିଷ୍ଠନ୍ତି ତଥାଽହଂ ବ୍ରହ୍ମ ଶାଶ୍ୱତମ ।।୮୧ ।।

ଯେପରି ବାଜୁବନ୍ଧ ଏବଂ କୁଣ୍ଡଳ ଆଦି ଅଳଙ୍କାର ସ୍ୱଭାବତଃ ସୁବର୍ଣ୍ଣରେ ନିର୍ମିତ, ସେହିପରି ମୁଁ ସ୍ୱଭାବତଃ ଶାଶ୍ୱତ ବ୍ରହ୍ମ ।।୮୧ ।।

ଯେହେ୍ନ ସ୍ୱଭାବତଃ ସୁବର୍ଣ୍ଣେ କୁଣ୍ଡଳ

ବାଜୁବନ୍ଧାଦି ନିର୍ମିତ,

ସେପରି ବ୍ରହ୍ମ ମୁଁ ସ୍ୱଭାବିକ ରୂପେ

ସାରା ସୃଷ୍ଟିରେ ଶାଶ୍ୱତ ।୮୧ ।

ସ୍ୱୟଂ ତଥାବିଧୋ ଭୂତ୍ୱା ସ୍ଥାତବ୍ୟଂ ଯତ୍ରକୁତ୍ରଚିତ୍ ।
କିଟୋ ଭୃଙ୍ଗ ଇବ ଧ୍ୟାନାତ୍ ଯଥା ଭବତି ତାଦୃଶଃ ।।୮୨ ।।

ସ୍ୱୟଂ ଏପରି ଭାବରେ ବୁଡ଼ି ରହି କୌଣସି ସ୍ଥାନରେ ରୁହନ୍ତୁ, ଯେପରି କୀଟ ଭ୍ରମରର ଚିନ୍ତନ କରି କରି ଭ୍ରମର ହୋଇଯାଏ ସେହିପରି ଜୀବ ବ୍ରହ୍ମକୁ ଧ୍ୟାନ କରି ବ୍ରହ୍ମସ୍ୱରୁପ ହୋଇଯାଏ ॥୮୨ ॥

କୀଟ ଭ୍ରମରର ଚିନ୍ତନେ ଭ୍ରମର
ହୋଇ ଯାଏ ଯେଉଁ ପରି,
ସେପରି ବ୍ରହ୍ମଙ୍କ ଧ୍ୟାନେ ବୁଡ଼ି ରୁହ
ସାରା ସଂସାର ପାଶୋରି ।୮୨ ।

ଗୁରୋର୍ଧ୍ୟାନେନୈବ ନିତ୍ୟଂ ଦେହୀ ବ୍ରହ୍ମମୟୋ ଭବେତ୍ ।
ସ୍ଥିତଶ୍ଚ ଯତ୍ରକୃତ୍ରାପି ମୁକ୍ତୋଽସୌ ନାତ୍ର ସଂଶୟଃ ॥୮୩ ॥

ସଦା ଗୁରୁଦେବଙ୍କର ଧ୍ୟାନ କରିବା ଦ୍ୱାରା ଜୀବ ବ୍ରହ୍ମମୟ ହୋଇଯାଏ । ସେ ଯେଉଁଠି ରହିଲେ ମଧ୍ୟ ମୁକ୍ତ, ଏଥିରେ କୌଣସି ସନ୍ଦେହ ନାହିଁ ॥୮୩ ॥

ନିତ୍ୟ ଗୁରୁଙ୍କର ଧ୍ୟାନ କରି ଜୀବ
ବ୍ରହ୍ମମୟ ହୋଇ ଯାଏ,
ଯହିଁ ଇଚ୍ଛା ତହିଁ ଅବସ୍ଥାନ କରି
ମୁକ୍ତ ସଂସାରେ ବୋଲାଏ ।୮୩ ।

ଜ୍ଞାନଂ ବୈରାଗ୍ୟମୈଶ୍ୱର୍ଯ୍ୟଂ ଯଶଃ ଶ୍ରୀଃ ସମୁଦାହୃତମ୍ ।
ଷଡ୍‌ଗୁଣୈଶ୍ୱର୍ଯ୍ୟଯୁକ୍ତୋ ହି ଭଗବାନ୍ ଶ୍ରୀଗୁରୁଃ ପ୍ରିୟେ ॥୮୪ ॥

ହେ ପ୍ରିୟେ ! ଭଗବତ୍‌ସ୍ୱରୂପ ଶ୍ରୀଗୁରୁଦେବ ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ, ଯଶ, ଲକ୍ଷ୍ମୀ ଏବଂ ମଧୁରବାଣୀ ପରି ଷଡ଼ଗୁଣରୂପୀ ଐଶ୍ୱର୍ଯ୍ୟ ସଂପନ୍ନ ଅଟନ୍ତି ॥୮୪ ॥

ଈଶ୍ୱର ସ୍ୱରୂପୀ ଗୁରୁଦେବ ଯଶ
ବୈରାଗ୍ୟ, ଐଶ୍ୱର୍ଯ୍ୟ, ଜ୍ଞାନ,
ଲକ୍ଷ୍ମୀ, ମଧୁବାଣୀ ଷଡ଼ଗୁଣରୂପୀ
ପ୍ରିୟେ ! ଐଶ୍ୱର୍ଯ୍ୟ ସମ୍ପନ୍ନ ।୮୪ ।

ଗୁରୁଃ ଶିବୋ ଗୁରୁର୍ଦ୍ଦେବୋ ଗୁରୁର୍ବନ୍ଧୁଃ ଶରୀରିଣାମ୍ ।
ଗୁରୁରାତ୍ମା ଗୁରୁର୍ଜୀବୋ ଗୁରୋରନ୍ୟନ୍ନ ବିଦ୍ୟତେ ।।୮୫ ।।

ମନୁଷ୍ୟ ପାଇଁ ଗୁରୁ ହିଁ ଶିବ, ଗୁରୁ ହିଁ ଦେବତା, ଗୁରୁ ହିଁ ବନ୍ଧୁ, ଗୁରୁ ହିଁ ଆତ୍ମା ଆଉ ଗୁରୁ ହିଁ ଜୀବନ । ବାସ୍ତବରେ ଗୁରୁଙ୍କ ବ୍ୟତୀତ ଜଗତରେ ଆଉ କିଛି ନାହିଁ ।।୮୫ ।।

ଜୀବ ପାଇଁ ଗୁରୁ ଶିବ, ଦେବ, ବନ୍ଧୁ,
ଆତ୍ମା, ଗୁରୁ ହିଁ ଜୀବନ,
ଜଗତରେ ନାହିଁ ଗୁରୁ ବ୍ୟତୀରେକେ
ବାସ୍ତବରେ କିଛି ଅନ୍ୟ ।୮୫ ।

ଏକାକୀ ନିସ୍ପୃହଃ ଶାନ୍ତଃ ଚିନ୍ତାସୂୟାଦିବର୍ଜିତଃ ।
ବାଲ୍ୟଭାବେନ ଯୋ ଭାତି ବ୍ରହ୍ମଜ୍ଞାନୀ ସ ଉଚ୍ୟତେ ।।୮୬ ।।

ଏକାନ୍ତ, କାମନାରହିତ, ଶାନ୍ତ, ଚିନ୍ତାରହିତ, ଈର୍ଷାହୀନ ଏବଂ ଶିଶୁସୁଲଭ ଯିଏ ଶୋଭାୟମାନ ସେ ବ୍ରହ୍ମଜ୍ଞାନୀ ଅଟନ୍ତି ।।୮୬ ।।

କାମନା ରହିତ ଈର୍ଷାହୀନ ଶାନ୍ତ
ଏକାନ୍ତ ଚିନ୍ତା ରହିତ,
ବ୍ରହ୍ମଜ୍ଞାନୀ ଗଣେ ଗଣା ଶିଶୁପ୍ରାୟ
ସଂସାରେ ଯେ ଶୋଭାବନ୍ତ ।୮୬ ।

ନ ସୁଖଂ ବେଦଶାସ୍ତ୍ରେଷୁ ନ ସୁଖଂ ମନ୍ତ୍ରଯନ୍ତ୍ରକେ ।
ଗୁରୋଃ ପ୍ରସାଦାଦନ୍ୟତ୍ର ସୁଖଂ ନାସ୍ତି ମହୀତଳେ ।।୮୭ ।।

ବେଦ, ଶାସ୍ତ୍ର ଅଧ୍ୟୟନରେ ସୁଖ ମିଳେ ନାହିଁ, ମନ୍ତ୍ର ଏବଂ ଯନ୍ତ୍ରରେ ମଧ୍ୟ ସୁଖ ନାହିଁ । ଏହି ପୃଥିବୀରେ ଗୁରୁଦେବଙ୍କ କୃପାପ୍ରସାଦ ବ୍ୟତୀତ ଅନ୍ୟତ୍ର କେଉଁଠାରେ ସୁଖ ମିଳେ ନାହିଁ ।।୮୭ ।।

ବେଦାଦି ଶାସ୍ତ୍ରର ଅଧ୍ୟୟନେ ସୁଖ
ନାହିଁ ବି ମନ୍ତ୍ର ଯନ୍ତ୍ରରେ,
ଗୁରୁଙ୍କର କୃପା ପ୍ରସାଦ ବ୍ୟତୀତ

ସୁଖ ନାହିଁ କେଉଁଠାରେ ।

ଚାର୍ବାକବୈଷ୍ଣବମତେ ସୁଖଂ ପ୍ରାଭାକରେ ନ ହି ।
ଗୁରୋଃ ପାଦାନ୍ତିକେ ଯଦ୍ୱସୁଖଂ ବେଦାନ୍ତସମ୍ମତମ୍ ॥୮୮ ॥

ଗୁରୁଦେବଙ୍କ ଶ୍ରୀଚରଣରେ ଯେଉଁ ବେଦାନ୍ତ ଅନୁମୋଦିତ ସୁଖ ମିଳେ ସେପରି ସୁଖ ନା ଚାର୍ବାକ ମତରେ, ନା ବୈଷ୍ଣବ ମତରେ ନା ପ୍ରଭାକର(ସାଂଖ୍ୟ)ମତରେ ମିଳିଥାଏ ॥୮୮ ॥

ଗୁରୁ ଶ୍ରୀଚରଣେ ବେଦାନ୍ତ ସମ୍ମତ
ହୁଏ ଯେ ସୁଖ ପ୍ରାପତ,
ଦିଏ ନାହିଁ ତାହା ଚାର୍ବାକ ବୈଷ୍ଣବ
ଅବା ପ୍ରାଭାକର ମତ ।୮୮ ।

ନ ତତ୍ସୁଖଂ ସୁରେନ୍ଦ୍ରସ୍ୟ ନ ସୁଖଂ ଚକ୍ରବର୍ତ୍ତିନାମ ॥
ଯତ୍ସୁଖଂ ବୀତରାଗସ୍ୟ ମୁନେରେକାନ୍ତବାସିନଃ ॥୮୯ ॥

ଏକାନ୍ତବାସୀ ବୈରାଗୀ ମୁନିଙ୍କୁ ଯେଉଁ ସୁଖ ପ୍ରାପ୍ତ ହୁଏ ସେପରି ସୁଖ ନା ଇନ୍ଦ୍ରଙ୍କୁ ନା ଚକ୍ରବର୍ତ୍ତୀ ରାଜାଙ୍କୁ ପ୍ରାପ୍ତ ହୋଇଥାଏ ॥୮୯ ॥

ଏକାନ୍ତବାସରେ ରହୁଥିବା ମୁନି
ବୈରାଗୀ ଯେ ସୁଖ ପାଏ,
ଚକ୍ରବର୍ତ୍ତୀ ରାଜା ଅବା ଦେବରାଜେ
ସେ ସୁଖ ପ୍ରାପ୍ତ ନ ହୁଏ ।

ନିତ୍ୟଂ ବ୍ରହ୍ମରସଂ ପିତ୍ୱା ତୃପ୍ତୋ ଯଃ ପରମାତ୍ମନି ।
ଇନ୍ଦ୍ରଂ ଚ ମନ୍ୟତେ ରଂକଂ ନୃପାଣାଂ ତତ୍ର କା କଥା ॥୯୦ ॥

ସର୍ବଦା ବ୍ରହ୍ମରସ ପାନକରି ପରମାତ୍ମାରେ ତୃପ୍ତ ହୋଇଥିବା ମୁନି ଇନ୍ଦ୍ରଙ୍କୁ ମଧ୍ୟ ଦରିଦ୍ର ମଣିଥାଏ, ତେବେ ରାଜାମାନଙ୍କର କଥା କ'ଣ କହିବା ? ॥୯୦ ॥

ନିତ୍ୟ ବ୍ରହ୍ମରସ ପାନ କରି ତୃପ୍ତ
ହୋଇଥିବା ପରମାତ୍ମା,
ସୁରେଶେ ଦରିଦ୍ର ମନେ କରିଥାଏ

ରାଜାଙ୍କ କିବା ଉପମା ।୯୦ ।

ଯତଃ ପରମକୈବଲ୍ୟଂ ଗୁରୁମାର୍ଗେଣ ବୈ ଭବେତ୍ ।
ଗୁରୁଭକ୍ତିରତିଃ କାର୍ଯ୍ୟା ସର୍ବଦା ମୋକ୍ଷକାଂକ୍ଷିଭିଃ ।।୯୧ ।।

ମୋକ୍ଷ ଇଚ୍ଛା ରଖିଥିବା (ମୁମୁକ୍ଷୁ) ବ୍ୟକ୍ତି ଖୁବ୍ ଗୁରୁଭକ୍ତି କରିବା ଉଚିତ, କାରଣ ଗୁରୁଦେବଙ୍କ ଦ୍ୱାରା ହିଁ ପରମ ମୋକ୍ଷ ପ୍ରାପ୍ତି ହୋଇଥାଏ ।।୯୧ ।।

ଏକା ଗୁରୁମାର୍ଗେ ପରମ କୈବଲ୍ୟ
ଶିଷ୍ୟ କରିଥାଏ ପ୍ରାପ୍ତ,
ମୋକ୍ଷାକାଂକ୍ଷି ଗୁରୁ ସେବାରେ ନିମଗ୍ନ
ରହିବା ତେଣୁ ଉଚିତ ।୯୧ ।

ଏକ ଏବାଦ୍ୱିତୀୟୋଽହଂ ଗୁରୁବାକ୍ୟେନ ନିଶ୍ଚିତଃ ।
ଏବମଭ୍ୟସ୍ୟତା ନିତ୍ୟଂ ନ ସେବ୍ୟଂ ବୈ ବନାନ୍ତରମ ।।୯୨ ।।
ଅଭ୍ୟାସାନ୍ନିମିଷେଣୈବ ସମାଧିମଧିଗଚ୍ଛତି ।
ଆଜନ୍ମଜନିତଂ ପାପଂ ତତ୍କ୍ଷଣାଦେବ ନଶ୍ୟତି ।।୯୩ ।।

ଗୁରୁଦେବଙ୍କ ବାକ୍ୟରେ ଭରସା ରଖି ଯିଏ ସିଦ୍ଧାନ୍ତ କରିନେଇଛି ଯେ ମୁଁ ଏକ ଓ ଅଦ୍ୱିତୀୟ (ଅଭିନ୍ନ) ଏବଂ ଏହାର ଅଭ୍ୟାସରେ ଯିଏ ନିତ୍ୟ ରତ ତା'ପାଇଁ ବନବାସ ଆବଶ୍ୟକ ନାହିଁ, କାରଣ ଅଭ୍ୟାସ ଦ୍ୱାରା ମୁହୂର୍ତ୍ତକ ମଧ୍ୟରେ ସମାଧିସ୍ଥ ହୋଇଯାଏ ଏବଂ ସେହି ମୁହୂର୍ତ୍ତରେ ତା'ର ଜନ୍ମ-ଜନ୍ମାନ୍ତରର ସମସ୍ତ ପାପ ନଷ୍ଟ ହୋଇଯାଏ ।।୯୨, ୯୩ ।।

ଏକ ଅଦ୍ୱିତୀୟ ମୁହିଁ ବୋଲି ଗୁରୁ
ବାକ୍ୟେ ଆସ୍ଥା ରଖି ଯିଏ,
ନିତ୍ୟାଭ୍ୟାସ ରତ ଯିବ ବନବାସ
ଅବା କାହିଁ ପାଇଁ ସିଏ ।୯୨ ।
ମୁହୂର୍ତ୍ତକ ମଧ୍ୟେ ହୁଏ ସମାଧିସ୍ଥ

ନିତ୍ୟ ଅଭ୍ୟାସ ବଳରେ,
ଜନ୍ମ ଜନ୍ମାନ୍ତର ପାପ ନଷ୍ଟ ହୁଏ
ତା'ର କ୍ଷଣକ ମଧ୍ୟରେ ।୯୩ ।

ଗୁରୁର୍ବିଷ୍ଣୁଃ ସତ୍ତ୍ୱମୟୋ ରାଜସଶ୍ଚତୁରାନନଃ ।
ତାମସୋ ରୁଦ୍ରରୂପେଣ ସୃଜତ୍ୟବତି ହନ୍ତି ଚ ।।୯୪ ।।

ଗୁରୁଦେବ ହିଁ ସତ୍ତ୍ୱଗୁଣୀ ହୋଇ ବିଷ୍ଣୁରୁପ ଧାରଣ କରି ଜଗତକୁ ପାଳନ କରିଥା'ନ୍ତି, ରଜଗୁଣୀ ହୋଇ ବ୍ରହ୍ମାରୂପ ଧାରଣ କରି ଜଗତର ସୃଷ୍ଟି କରିଥା'ନ୍ତି ଏବଂ ତମୋଗୁଣୀ ହୋଇ ଶଙ୍କରରୂପ ଧାରଣ କରି ଜଗତର ସଂହାର କରିଥା'ନ୍ତି ।।୯୪ ।।

ସତ୍ତ୍ୱଗୁଣୀ ଗୁରୁ ବିଷ୍ଣୁଙ୍କ ସ୍ୱରୂପ
ଚତୁର୍ମୁଖ ରଜୋଗୁଣେ,
ତମୋଗୁଣେ ଶିବ ପାଳନ୍ତି ସର୍ଜନ୍ତି
ସଂହାରନ୍ତି ତତ୍‌କ୍ଷଣେ ।୯୪ ।

ତସ୍ୟାବଲୋକନଂ ପ୍ରାପ୍ୟ ସର୍ବ ସଂଗବିବର୍ଜିତଃ ।
ଏକାକୀନିଃସ୍ପୃହଃ ଶାନ୍ତଃ ସ୍ଥାତବ୍ୟଂ ତତ୍‌ପ୍ରସାଦତଃ ।।୯୫ ।।

ତାଙ୍କର (ଗୁରୁଦେବଙ୍କର) ଦର୍ଶନ ଲାଭକରି, ତାଙ୍କର କୃପାପ୍ରସାଦ ଦ୍ୱାରା ସମସ୍ତ ପ୍ରକାର ଆସକ୍ତି ତ୍ୟାଗକରି ଏକାକୀ, ନିଃସ୍ପୃହ ଏବଂ ଶାନ୍ତ ହୋଇ ରହିବା ଉଚିତ ।।୯୫ ।।

ଗୁରୁ ଦରଶନ ଲାଭ କରି ତାଙ୍କ
କୃପା ପରସାଦ ପାଇ,
ଆସକ୍ତି ତେଜିଣ ଏକାକୀ ନିସ୍ପୃହ
ରହିବ ଯେ ଶାନ୍ତ ହୋଇ ।୯୫ ।

ସର୍ବଜ୍ଞପଦମିତ୍ୟାହୁର୍ଦେହୀ ସର୍ବ ମୟୋ ଭୁବି ।
ସଦାଽନନ୍ଦଃ ସଦା ଶାନ୍ତୋ ରମତେ ଯତ୍ରକୁତ୍ରଚିତ ।।୯୬ ।।

ଏହି ଜଗତରେ ସର୍ବଦା ଆନନ୍ଦମୟ ଏବଂ ସର୍ବଦା ଶାନ୍ତ ହୋଇ ସର୍ବତ୍ର ବିଚରଣ କରୁଥିବା ବ୍ୟକ୍ତି ହିଁ ସର୍ବଜ୍ଞ ଅଟେ ॥୯୬ ॥

ଏହି ସଂସାରରେ ସର୍ବଦା ଆନନ୍ଦ
ସଦାବେଳେ ଶାନ୍ତ ହୋଇ,
ବିଚରଇ ଯିଏ ଦେହୀଗଣ ମଧ୍ୟେ
ସର୍ବଜ୍ଞ ସିଏ ବୋଲାଇ ।୯୬ ।

ଯତ୍ରୈବ ତିଷ୍ଠତେ ସୋଽପି ସ ଦେଶଃ ପୁଣ୍ୟଭାଜନଃ ।
ମୁକ୍ତସ୍ୟ ଲକ୍ଷଣଂ ଦେବି ତବାଗ୍ରେ କଥିତଂ ମୟା ॥୯୭ ॥

ଏପରି ପୁରୁଷ ଯେଉଁଠାରେ ଅବସ୍ଥାନ କରନ୍ତି ସେ ସ୍ଥାନ ପୁଣ୍ୟତୀର୍ଥ ଅଟେ । ହେ ଦେବୀ । ତୁମ ସମ୍ମୁଖରେ ମୁଁ ମୁକ୍ତାତ୍ମା ମହାପୁରୁଷଙ୍କ ଲକ୍ଷଣ କହିଲି ॥୯୭ ॥

ଏପରି ପୁରୁଷ ଯେଉଁଠି ରୁହନ୍ତି
ପୁଣ୍ୟତୀର୍ଥ ସେହିସ୍ଥାନ,
ମୁକ୍ତ ପୁରୁଷର ଲକ୍ଷଣ କହିଲି
ଦେବୀ ! ତୁମ୍ଭ ସନ୍ନିଧାନ ।୯୭ ।

ଯଦ୍ୟପ୍ୟଧୀତା ନିଗମାଃ ଷଡ଼ଙ୍ଗା ଆଗମାଃ ପ୍ରିୟେ ।
ଅଧ୍ୟାତ୍ମାଦୀନି ଶାସ୍ତ୍ରାଣି ଜ୍ଞାନଂ ନାସ୍ତି ଗୁରୁଂ ବିନା ॥୯୮ ॥

ହେ ପ୍ରିୟେ ! ମନୁଷ୍ୟ ଚାରି ବେଦ, ଛଅ ବେଦାଙ୍ଗ, ଆଧ୍ୟାତ୍ମ୍ୟଶାସ୍ତ୍ର ଆଦି ସମସ୍ତ ଶାସ୍ତ୍ର ଅଧ୍ୟୟନ କଲେ ମଧ୍ୟ ଶ୍ରୀଗୁରୁଦେବଙ୍କ ବିନା, ଜ୍ଞାନ ପ୍ରାପ୍ତ ହୋଇ ନ ଥାଏ ॥୯୮ ॥

ହେ ପ୍ରିୟେ ! ମନୁଷ୍ୟ ଚାରି ବେଦ ଛଅ
ଦେବାଙ୍ଗ ଆଧ୍ୟାତ୍ମ୍ୟଶାସ୍ତ୍ର,
ଶ୍ରୀଗୁରୁଙ୍କ ବିନା ଯେତେ ପଢ଼ିଲେ ବି
ହୁଏ ନାହିଁ ଜ୍ଞାନପ୍ରାପ୍ତ ।୯୮ ।

ଶିବପୂଜାରତୋ ବାପି ବିଷ୍ଣୁପୂଜାରତୋଽଥବା ।
ଗୁରୁତତ୍ତ୍ୱ ବିହୀନଶ୍ଚେ ଉତ୍ସର୍ବଂ ବ୍ୟର୍ଥମେବ ହି ।।୯୯ ।।

ଶିବଙ୍କର ପୂଜାରେ ନିମଗ୍ନ ହୁଅନ୍ତୁ ଅଥବା ବିଷ୍ଣୁଙ୍କ ପୂଜାରେ ନିମଗ୍ନ ହୁଅନ୍ତୁ, କିନ୍ତୁ ଗୁରୁତତ୍ତ୍ୱର ଜ୍ଞାନ ବିନା ଏସମସ୍ତ ପୂଜା ଆରାଧନା ବ୍ୟର୍ଥ ।।୯୯ ।।

ଶିବଙ୍କର ପୂଜା କର ଅବା କର
ବିଷ୍ଣୁଙ୍କର ଆରଧନା,
ନିଷ୍ଫଳ ହୁଅଇ ସମସ୍ତ ପୂଜନ
ଗୁରୁତତ୍ତ୍ୱ ଜ୍ଞାନ ବିନା ।୯୯ ।

ସର୍ବଂ ସ୍ୟାତ୍‌ସଫଳଂ କର୍ମ ଗୁରୁଦୀକ୍ଷାପ୍ରଭାବତଃ ।
ଗୁରୁଲାଭାସ୍ତର୍ବଲାଭୋ ଗୁରୁହୀନସ୍ତୁ ବାଲିଶଃ ।।୧୦୦ ।।

ଗୁରୁ ଦୀକ୍ଷାର ପ୍ରଭାବରେ ସମସ୍ତ କାର୍ଯ୍ୟ ସଫଳ ହୋଇଥାଏ । ଗୁରୁଦେବଙ୍କ ସାନ୍ନିଧ୍ୟ ଲାଭ ଦ୍ୱାରା ଅନ୍ୟ ସମସ୍ତ ଲାଭ ମିଳିଥାଏ । ଯାହାର ଗୁରୁ ନାହିଁ ସେ ମୂର୍ଖ ।।୧୦୦ ।।

ସମସ୍ତ କର୍ମରେ ମିଳେ ସଫଳତା
ଗୁରୁ ଦୀକ୍ଷା ପ୍ରଭାବରେ,
ଗୁରୁ ଲାଭେ ଲାଭ ସର୍ବ କ୍ଷେତ୍ରେ ଗଣା
ଗୁରୁହୀନ ମୁରୁଖରେ ।୧୦୦ ।

ତସ୍ମାତ୍ ସର୍ବପ୍ରଯତ୍ନେନ ସର୍ବ ସଙ୍ଗବିବର୍ଜିତଃ ।
ବିହାୟ ଶାସ୍ତ୍ରଜାଲାନି ଗୁରୁମେବ ସମାଶ୍ରୟେତ୍ ।।୧୦୧ ।।

ଏଥିପାଇଁ ସମସ୍ତ ପ୍ରକାର ପ୍ରଯତ୍ନରୁ ଅନାସକ୍ତ ହୋଇ, ଶାସ୍ତ୍ରର ମାୟାଜାଲକୁ ତ୍ୟାଗ କରି ଗୁରୁଦେବଙ୍କର ଶରଣ ନେବା ଉଚିତ ।।୧୦୧ ।।

ଅନାସକ୍ତ ହୋଇ ସମସ୍ତ ପ୍ରକାର
ପ୍ରଯତ୍ନରୁ ଏଥିପାଇଁ,
ଗୁରୁଙ୍କ ଶରଣ ନେବ ଶାସ୍ତ୍ର ମାୟା

ଜାଲ ତ୍ୟାଗ କରି ଦେଇ ।୧୦୧ ।

ଜ୍ଞାନହୀନୋ ଗୁରୁତ୍ୟାଜ୍ୟୋ ମିଥ୍ୟାବାଦୀ ବିଡ଼ମ୍ବକଃ ।
ସ୍ୱବିଶ୍ରାନ୍ତିଂ ନ ଜାନାତି ପରଶାନ୍ତିଂ କରୋତି କିମ୍ ।।୧୦୨ ।।

ଜ୍ଞାନହୀନ, ମିଥ୍ୟାବାଦୀ ଏବଂ ପ୍ରତାରଣାକାରୀ (କପଟୀ) ଗୁରୁଙ୍କୁ ତ୍ୟାଗ କରିଦେବା ଉଚିତ କାରଣ ଯିଏ ସ୍ୱୟଂ ଶାନ୍ତି ଲାଭ କରିବା ଜାଣି ନାହିଁ ସେ ଅନ୍ୟଙ୍କୁ ବା ଶାନ୍ତି ଦେବ କିପରି ।।୧୦୨ ।।

ଜ୍ଞାନହୀନ ମିଥ୍ୟା- ବାଦୀ ବିଡ଼ମ୍ବକ
ଗୁରୁଙ୍କୁ ତ୍ୟାଗ କରିବ,
ସ୍ୱୟଂ ଶାନ୍ତି ଲାଭ କରି ଯେ ଜାଣେନା
ଅନ୍ୟେ କେହ୍ନେ ଶାନ୍ତି ଦେବ ।୧୦୨ ।

ଶିଳାୟାଃ କିଂ ପରଂ ଜ୍ଞାନଂ ଶିଳାସଂଘପ୍ରତାରଣେ ।
ସ୍ୱୟଂ ତର୍ତ୍ତୁଂ ନ ଜାନାତି ପରଂ ନିସ୍ତାରୟେତ୍କଥମ୍ ।।୧୦୩ ।।

ପଥରମାନଙ୍କୁ ପହଁରାଇବାର ଜ୍ଞାନ ପଥରକୁ କିପରି ଆସିବ ? ଯେ ସ୍ୱୟଂ ପହଁରିବା ଜାଣି ନାହିଁ ସେ ଅନ୍ୟଙ୍କୁ କିପରି ପାର କରିବ ।।୧୦୩ ।।

ଶୈଳେ ସନ୍ତରଣ କରାଇବା ଜ୍ଞାନ
ଶୈଳ କିପରି ଜାଣିବ,
ସ୍ୱୟଂ ପହଁରିବା ଜାଣିନାହିଁ ଯିଏ
ଅନ୍ୟେ କେହ୍ନେ ଉଦ୍ଧାରିବ ।୧୦୩ ।

ନ ବନ୍ଦନୀୟାସ୍ତେ କଷ୍ଟଂ ଦର୍ଶନାଦ୍ ଭ୍ରାନ୍ତିକାରକାଃ ।
ବର୍ଜୟେତ୍ତାନ୍ ଗୁରୁନ୍ ଦୂରେ ଧୀରାନେବ ସମାଶ୍ରୟେତ୍ ।।୧୦୪ ।।

ଯେଉଁ ଗୁରୁ ନିଜ ଅଭିନୟ (ଛଳନା) ଦ୍ୱାରା ଶିଷ୍ୟଙ୍କୁ ଭ୍ରମରେ ପକାଇଥାଏ ସେପରି ଗୁରୁଙ୍କୁ ପ୍ରଣାମ କରିବା ଉଚିତ ନୁହେଁ । କେବଳ ଏତିକି ନୁହେଁ ତାଙ୍କୁ ଦୂରରୁ ହିଁ ତ୍ୟାଗ କରିବା ଦରକାର । ଏପରି ସ୍ଥିତିରେ ଧୈର୍ଯ୍ୟବାନ ଗୁରୁଙ୍କର ଆଶ୍ରୟ ନେବା ଉଚିତ ।।୧୦୪ ।।

ଯେଉଁ ଗୁରୁ ଛଳେ ଭ୍ରାନ୍ତି ଦିଏ ଶିଷ୍ୟେ
ନ ନମି ତେଜିବ ତାଙ୍କୁ,
ଆଶ୍ରୟ କରିବ ବିଦ୍ୱାନ ସମର୍ଥ
ଧଇର୍ଯ୍ୟବାନ ଗୁରୁଙ୍କୁ ।୧୦୪ ।

ପାଖଣ୍ଡନଃ ପାପରତା ନାସ୍ତିକା ଭେଦବୁଦ୍ଧୟଃ ।
ସ୍ତ୍ରୀଲମ୍ପଟା ଦୂରାଚାରାଃ କୃତଘ୍ନା ବକବୃତ୍ତୟଃ ।।୧୦୫ ।।
କର୍ମଭ୍ରଷ୍ଟାଃ କ୍ଷମାନଷ୍ଟାଃ ନିନ୍ଦ୍ୟତର୍କୈଶ୍ଚ ବାଦିନଃ ।
କାମିନଃ କ୍ରୋଧିନଶ୍ଚୈବ ହିଂସ୍ରାଶ୍ଚଂଡ଼ାଃ ଶଠାସ୍ତଥା ।।୧୦୬ ।।
ଜ୍ଞାନଲୁପ୍ତା ନ କର୍ତ୍ତବ୍ୟା ମହାପାପାସ୍ତଥା ପ୍ରିୟେ ।
ଏଭ୍ୟୋ ଭିନ୍ନୋ ଗୁରୁଃ ସେବ୍ୟ ଏକଭକ୍ତ୍ୟା ବିଚାର୍ଯ୍ୟ ଚ ।।୧୦୭ ।।

ହେ ପ୍ରିୟେ ! ପାଖଣ୍ଡୀ, ପାପୀ, ନାସ୍ତିକ, ଭେଦବୁଦ୍ଧି ଉତ୍ପନ୍ନକାରୀ, ସ୍ତ୍ରୀଲମ୍ପଟ, ଦୁରାଚାରୀ, କୃତଘ୍ନ, ଠକ, କର୍ମଭ୍ରଷ୍ଟ, କ୍ଷମାଶୂନ୍ୟ, କୁତର୍କୀ, କାମୀ, କ୍ରୋଧୀ, ହିଂସକ, ଉଗ୍ର, ଶଠ, ଅଜ୍ଞାନୀ ଏବଂ ମହାପାପୀ ପୁରୁଷକୁ ଗୁରୁ କରିବା ଉଚିତ ନୁହେଁ । ଏହା ବିଚାର କରି ଉପରୋକ୍ତ ଏ ସମସ୍ତର ବିପରୀତ ଲକ୍ଷଣଯୁକ୍ତ ଗୁରୁଙ୍କର ଏକନିଷ୍ଠ ଭକ୍ତି ଦ୍ୱାରା ସେବା କରିବା ଉଚିତ ।।୧୦୫, ୧୦୬,୧୦୭ ।।

କୃତଘ୍ନ ପାଖଣ୍ଡୀ ପାପୀ ଭେଦବୁଦ୍ଧି
ଉତ୍ପନ୍ନକାରୀ ନାସ୍ତିକ,
ସ୍ତ୍ରୀଲମ୍ପଟ ଦୂରା- ଚାରୀ ପୁରୁଷ ଯେ
ଜଗତ ଚକ୍ଷୁରେ ଠକ ।୧୦୫ ।

କର୍ମଭ୍ରଷ୍ଟ କାମୀ କ୍ଷମାଶୂନ୍ୟ କ୍ରୋଧୀ
କୁତର୍କୀ ଶଠ ଅଜ୍ଞାନୀ,
ଉଦ୍ଧତ ନିଜକୁ ଈଶ୍ୱର ରୂପରେ

ପ୍ରଦର୍ଶେ ଯେ ଅଭିମାନି ।୧୦୬ ।

ଗୁରୁ ନାମ ଧାରୀ ମହାପାପାଚାରୀ

ତେଜି ଢ଼ୋଙ୍ଗୀଙ୍କୁ ଏପରି,

ଅନ୍ୟ ଗୁରୁ ପଦେ ସେବିବ ଭକ୍ତିରେ

ଗୁଣ ଦୋଷକୁ ବିଚାରି ।୧୦୭ ।

ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ଧର୍ମସାରଂ ମୟୋଦିତମ୍ ।
ଗୁରୁଗୀତୀ ସମଂସ୍ତୋତ୍ରଂ ନାସ୍ତି ତତ୍ତ୍ୱଂ ଗୁରୋଃ ପରମ୍ ।।୧୦୮ ।।

ଗୁରୁଗୀତା ସମାନ ଅନ୍ୟ କୌଣସି ସ୍ତୋତ୍ର ନାହିଁ । ଗୁରୁଙ୍କ ସମାନ ଅନ୍ୟ କୌଣସି ତତ୍ତ୍ୱ ନାହିଁ । ସମସ୍ତ ଧର୍ମର ସାର ମୁଁ କହିଲି, ଏହା ସତ୍ୟ, ସତ୍ୟ ଏବଂ ସତ୍ୟ ଅଟେ ।।୧୦୮ ।।

ଗୁରୁଗୀତା ସମ ଅନ୍ୟ ସ୍ତୋତ୍ର ନାହିଁ

ଗୁରୁ ସମ ଅନ୍ୟ ତତ୍ତ୍ୱ,

ସମସ୍ତ ଧର୍ମର ସାର ମୁଁ କହିଲି

ସତ୍ୟ ସତ୍ୟ ଏହା ସତ୍ୟ ।୧୦୮ ।

ଅନେନ ଯଦ୍ ଭବେଦ୍ କାର୍ଯ୍ୟଂ ତଦ୍ୱଦାମି ତବ ପ୍ରିୟେ ।
ଲୋକୋପକାରକଂ ଦେବି ଲୌକିକଂ ତୁ ବିବର୍ଜୟେତ୍ ।।୧୦୯ ।।

ହେ ପ୍ରିୟେ ! ଏହି ଗୁରୁଗୀତା ପାଠ କରିବା ଦ୍ୱାରା କି କି ଉପକାର ହୋଇଥାଏ ଏବେ କହୁଛି ଶୁଣ । ହେ ଦେବୀ ! ଲୋକମାନଙ୍କ ପାଇଁ ଏହା ଉପକାରୀ, ମାତ୍ର ଭୌତିକତାକୁ ତ୍ୟାଗ କରିବା ଉଚିତ ।।୧୦୯ ।।

ଶୁଣ ପ୍ରିୟେ ! କଲେ ଗୁରୁଗୀତା ପାଠ

ମିଳଇ କି ଉପକାର,

ଉପକାରୀ ମାତ୍ର ଭୌତିକତା ତ୍ୟାଗ

ଫଳେ ହୁଏ ଲାଭକର ।୧୦୯ ।

ଲୌକିକାଦ୍ଧର୍ମତୋ ଯାତି ଜ୍ଞାନହୀନୋ ଭବାର୍ଣ୍ଣବେ ।

ଜ୍ଞାନଭାବେ ଚ ଯତ୍‌ସର୍ବଂ କର୍ମ ନିଷ୍କର୍ମ ଶାମ୍ୟତି ।।୧୧୦ ।।

ଯଦି କେହି ଲୌକିକ କାର୍ଯ୍ୟରେ ଏହାର ଉପଯୋଗ କରିବ ତେବେ ସେ ଜ୍ଞାନହୀନ ହୋଇ ସଂସାରରୂପକ୍ ସାଗରରେ ପତିତ ହେବ । ଜ୍ଞାନ, ଭାବ ନେଇ କୌଣସି କର୍ମରେ ଏହାର ଉପଯୋଗ କଲେ ସେହି କର୍ମ ନିଷ୍କର୍ମରେ ପରିଣତ ହୋଇ ଶାନ୍ତି ପ୍ରଦାନ କରିବ ।।୧୧୦ ।।

ଲୌକିକ କାର୍ଯ୍ୟରେ ଉପଯୋଗକାରୀ
ଭବାର୍ଣ୍ଣବେ ପଡ଼ି ଥାଏ,
ଜ୍ଞାନ ଭାବେ କଲେ ପ୍ରୟୋଗ ନିଷ୍କାମ
କର୍ମ ହୋଇ ଶାନ୍ତି ଦିଏ ।୧୧୦ ।

ଇମାଂ ତୁ ଭକ୍ତିଭାବେନ ପଠେଦ୍ୱୈ ଶୃଣୁୟାଦପି ।
ଲିଖିତ୍ୱା ଯତ୍‌ପ୍ରସାଦେନ ତତ୍‌ସର୍ବଂ ଫଳମଶ୍ନୁତେ ।।୧୧୧ ।।

ଭକ୍ତିଭାବପୂର୍ବକ ଏହି ଗୁରୁଗୀତାର ପଠନ, ଶ୍ରବଣ ଓ ଲିଖନ ଦ୍ୱାରା ସମସ୍ତ ଫଳ ପ୍ରାପ୍ତ ହୋଇଥାଏ ।।୧୧୧ ।।

ପଠନ ଶ୍ରବଣ ଲିଖନ କରିଲେ
ଭକତି ପୂର୍ଣ୍ଣ ମନରେ,
ଏ ଗୁରୁ ଗୀତାର ପ୍ରସାଦରେ ମିଳେ
ସର୍ବ ଫଳ ଜୀବନରେ ।୧୧୧ ।

ଗୁରୁଗୀତାମିମାଂ ଦେବି ହୃଦି ନିତ୍ୟଂ ବିଭାବୟ ।
ମହାବ୍ୟାଧିଗତୈର୍ଦୁଃଖୈଃ ସର୍ବଦା ପ୍ରଜପେନ୍ମୁଦା ।।୧୧୨ ।।

ହେ ଦେବୀ ! ଏହି ଗୁରୁଗୀତାକୁ ନିତ୍ୟ ଭାବପୂର୍ବକ ହୃଦୟରେ ଧାରଣ କର । ମହାବ୍ୟାଧିଗ୍ରସ୍ତ ଦୁଃଖୀ ଲୋକ ସଦା ଆନନ୍ଦର ସହିତ ଏହାର ଜପ କରିବା ଉଚିତ ।।୧୧୨ ।।

ହେ ଦେବୀ ହୃଦୟେ କର ଗୁରୁଗୀତା
ଭାବପୂର୍ବକ ଧାରଣ,
ମହାବ୍ୟାଧିଗ୍ରସ୍ତ ଦୁଃଖୀ କରୁ ଜପ
ସର୍ବଦା ଆନନ୍ଦ ମନ ।୧୧୨ ।

ଗୁରୁଗୀତାକ୍ଷରୈକୈକଂ ମନ୍ତ୍ରରାଜମିଦଂ ପ୍ରିୟେ ॥
ଅନ୍ୟେ ଚ ବିବିଧା ମନ୍ତ୍ରାଃ କଳାଂ ନାର୍ହନ୍ତି ଷୋଡ଼ଶୀମ୍ ॥୧ ୧୩ ॥

ହେ ପ୍ରିୟେ ! ଗୁରୁଗୀତାର ଗୋଟିଏ ଗୋଟିଏ ଅକ୍ଷର ମନ୍ତ୍ରରାଜ ଅଟନ୍ତି । ଅନ୍ୟ ଯେଉଁ ସବୁ ମନ୍ତ୍ର ଅଛି ତାହା ଏହାର ଷୋହଳ ଭାଗରୁ ଏକଭାଗ ସହିତ ମଧ୍ୟ ସମାନ ନୁହନ୍ତି ॥୧ ୧୩ ॥

ମନ୍ତ୍ରରାଜ ଏକ ଏକ ହିଁ ଅଟନ୍ତି
ଗୁରୁଗୀତାର ଅକ୍ଷର,
ହେ ପ୍ରିୟେ ! ଷୋଡ଼ଶ ଅଂଶ ସହ ସମ
ନୁହେଁ ଅନ୍ୟାନ୍ୟ ମନ୍ତର ।୧ ୧୩ ।

ଅନନ୍ତଫଳମାପ୍ନୋତି ଗୁରୁ ଗୀତାଜପେନ ତୁ ।
ସର୍ବପାପହରା ଦେବୀ ସର୍ବଦାରିଦ୍ର୍ୟନାଶିନୀ ॥୧ ୧୪ ॥

ହେ ଦେବୀ ! ଗୁରୁଗୀତା ଜପ କରିବା ଦ୍ୱାରା ଅନନ୍ତ ଫଳ ପ୍ରାପ୍ତ ହୋଇଥାଏ । ଏହା ସର୍ବ ପାପହାରିଣୀ ଏବଂ ସର୍ବ ଦାରିଦ୍ର୍ୟନାଶିନୀ ଅଟେ ॥୧ ୧୪ ॥

ଗୁରୁଗୀତା ଜପ କରିବା ଫଳରେ
ଅନନ୍ତ ଫଳ ମିଳଇ,
ହେ ଦେବୀ ! ସମସ୍ତ ପାପ ହାରିଣୀ ସେ
ଦାରିଦ୍ର୍ୟନାଶିନୀ ସେଇ ।୧ ୧୪ ।

ଅକାଳମୃତ୍ୟୁହନ୍ତ୍ରୀ ଚ ସର୍ବ ସଙ୍କଟନାଶିନୀ ।
ଯକ୍ଷରାକ୍ଷସଭୂତାଦି ଚୋରବ୍ୟାଘ୍ର ବିଘାତିନୀ ॥୧ ୧୫ ॥

ଗୁରୁଗୀତା ଅକାଳ ମୃତ୍ୟୁକୁ ଦୂର କରେ, ସମସ୍ତ ସଙ୍କଟ ନାଶ କରେ, ଯକ୍ଷ, ରାକ୍ଷସ, ଭୂତ, ଚୋର ଏବଂ ବ୍ୟାଘ୍ର ଆଦିର ଭୟ ଦୂର କରେ ॥୧ ୧୫ ॥

ଅକାଳ ମୃତ୍ୟୁର ସଂହାର କାରିଣୀ
ସର୍ବ ସଙ୍କଟନାଶିନୀ,

ଚୋରବ୍ୟାଘ୍ର ଭୂତ ଯକ୍ଷରାକ୍ଷସଙ୍କ
ଭୟର ଧ୍ୱଂସ କାରିଣୀ ।୧୧୫ ।

ସର୍ବୋପଦ୍ରବ କୁଷ୍ଠାଦି୍ ଦୁଷ୍ଟଦୋଷନିବରିଣୀ ।
ଯତ୍‌ଫଳଂ ଗୁରୁସାନ୍ନିଧ୍ୟାତ୍ତତ୍ ଫଳଂ ପଠନାଦ୍ ଭବେତ୍ ।।୧୧୬ ।।

ଗୁରୁଗୀତା ସମସ୍ତ ପ୍ରକାର ଉପଦ୍ରବ, କୁଷ୍ଠ ଆଦି ଦୁଷ୍ଟ ରୋଗ ଏବଂ ସମସ୍ତ ଦୋଷମାନଙ୍କର ନିବାରଣକାରୀ । ଶ୍ରୀଗୁରୁଦେବଙ୍କ ସାନ୍ନିଧ ଦ୍ୱାରା ଯେଉଁ ଫଳ ପ୍ରାପ୍ତ ହୁଏ ସେହି ଫଳ ଗୁରୁ ଗୀତା ପାଠ ଦ୍ୱାରା ମଧ୍ୟ ପ୍ରାପ୍ତ ହୋଇଥାଏ ।।୧୧୬ ।।

ସର୍ବ ଉପଦ୍ରବ କୁଷ୍ଠ ଆଦି ଦୁଷ୍ଟ
ଦୋଷ ନିବାରଣକାରୀ,
ଗୁରୁ ସଂଗୁ ଫଳ ଯା' ମିଳେ ତା' ମିଳେ
ଗୁରୁଗୀତା ପାଠ କରି ।୧୧୬ ।

ମହାବ୍ୟାଧିହରା ସର୍ବବିଭୂତେଃ ସିଦ୍ଧିଦା ଭବେତ୍ ।
ଅଥବା ମୋହନେ ବଶ୍ୟେ ସ୍ୱୟଂମେବ ଜପେତ୍‌ସଦା ।।୧୧୭ ।।

ଏହି ଗୁରୁଗୀତା ପାଠ କରିବା ଦ୍ୱାରା ମହାବ୍ୟାଧି ଦୂର ହୁଏ, ସମସ୍ତ ଐଶ୍ୱର୍ଯ୍ୟ ଏବଂ ସିଦ୍ଧି ପ୍ରାପ୍ତ ହୁଏ । ମୋହନ ଅଥବା ବଶୀକରଣ ନିମନ୍ତେ ଏହା ସ୍ୱୟଂ ପାଠ କରିବା ଉଚିତ ।।୧୧୭ ।।

ମହାବ୍ୟାଧିନାଶ ସର୍ବୈଶ୍ୱର୍ଯ୍ୟ ସିଦ୍ଧି
ପଠନେ ହୁଏ ପ୍ରାପତ,
ବଶୀକରଣ ବା ମୋହନ ନିମନ୍ତେ
ସ୍ୱୟଂ ଜପିବା ଉଚିତ ।୧୧୭ ।

ମୋହନଂ ସର୍ବଭୂତାନାଂ ବନ୍ଧମୋକ୍ଷକରଂ ପରମ୍ ।।
ଦେବରାଜ୍ଞାଂ ପ୍ରିୟକରଂ ରାଜାନଂ ବଶମାନୟେତ୍ ।।୧୧୮ ।।

ଏହି ଗୁରୁଗୀତା ପଠନକାରୀଙ୍କ ପ୍ରତି ସମସ୍ତ ପ୍ରାଣୀ ମୋହିତ ହୋଇଯା'ନ୍ତି, ଉବ ବନ୍ଧନରୁ ପରମ ମୁକ୍ତି ମିଳିଥାଏ । ସେ ଦେବରାଜ ଇନ୍ଦ୍ରଙ୍କର ଅତ୍ୟନ୍ତ ପ୍ରିୟ ହୋଇଥାଏ ଏବଂ ରାଜାମାନେ ମଧ୍ୟ ତା'ର ବଶତା ସ୍ୱୀକାର କରନ୍ତି ।।୧୧୮ ।।

ସର୍ବ ପ୍ରାଣୀଗଣ          ହୁଅନ୍ତି ମୋହିତ
ପ୍ରିୟ ହୁଏ ଇନ୍ଦ୍ରଙ୍କର,
ରାଜାଗଣ ମଧ୍ୟ          ସ୍ୱୀକାର କରନ୍ତି
ବଶ୍ୟତା ତା' ପାଠକର ।୧୧୮ ।

ମୁଖସ୍ତମ୍ଭକରଂ ଚୈବ ଗୁଣାନାଂ ଚ ବିବର୍ଦ୍ଧନମ୍ ॥
ଦୁଷ୍କର୍ମନାଶନଂ ଚୈବ ତଥା ସତ୍ କର୍ମସିଦ୍ଧିଦମ୍ ॥୧୧୯ ॥

ଏହି ଗୁରୁଗୀତା ପାଠ ଦ୍ୱାରା ଶତ୍ରୁର ମୁଖ ବନ୍ଦ ହୋଇଯାଏ । ଏହା ସଦ୍ ଗୁଣର ବୃଦ୍ଧି କାରୀ, ଦୁଷ୍କର୍ମର ନାଶକାରୀ ତଥା ସତ୍ କର୍ମରେ ସିଦ୍ଧି ପ୍ରଦାନକାରୀ ॥୧୧୯ ॥

ମୁଖସ୍ତମ୍ଭକର          ସଦ୍ଗୁଣ ବର୍ଦ୍ଧକ
ଦୁଷ୍କର୍ମର ନାଶକାରୀ,
ଗୁରୁଗୀତା ପାଠ          ସତ୍କର୍ମରେ ସିଦ୍ଧି
ଅକ୍ଳେଶେ ପ୍ରଦାନକାରୀ ।୧୧୯ ।

ଅସିଦ୍ଧଂ ସାଧୟେତ୍କାର୍ଯ୍ୟଂ ନବଗ୍ରହଭୟାପହମ୍ ।
ଦୁଃସ୍ୱପ୍ନନାଶନଂ ଚୈବ ସୁସ୍ୱପ୍ନଫଳଦାୟକମ ॥୧୨୦ ॥

ଏହାକୁ ପାଠ କଲେ ଅସାଧ୍ୟ କାର୍ଯ୍ୟ ସାଧ୍ୟ ହୁଏ, ନବଗ୍ରହଙ୍କର ଭୟ ଦୂର ହୁଏ । ଦୁଃସ୍ୱପ୍ନ ନାଶ କରି ସୁସ୍ୱପ୍ନର ଫଳ ପ୍ରାପ୍ତି କରାଏ ॥୧୨୦ ॥

ପଠନ ଫଳରେ          ଅସାଧ୍ୟ କାର୍ଯ୍ୟଟି
ଅବିଳମ୍ବେ ସାଧ୍ୟ ହୁଏ,
ନବଗ୍ରହପୀଡ଼ା          ନାଶି ଦୁଃସ୍ୱପ୍ନକୁ
ସୁସ୍ୱପ୍ନର ଫଳ ଦିଏ ।୧୨୦ ।

ମୋହଶାନ୍ତିକରଂ ଚୈବ ବନ୍ଧମୋକ୍ଷକରଂ ପରମ୍ ।
ସ୍ୱରୂପଜ୍ଞାନନିଳୟଂ ଗୀତାଶାସ୍ତ୍ରମିଦଂ ଶିବେ ॥୧୨୧ ॥

ହେ ଶିବେ ! ଏହି ଗୁରୁଗୀତାରୂପୀ ଶାସ୍ତ୍ର ମୋହକୁ ଶାନ୍ତ କରାଏ, ଭବବନ୍ଧନରୁ ମୁକ୍ତ କରାଏ । ଏହା ସ୍ୱରୂପଜ୍ଞାନର ଭଣ୍ଡାର ॥୧୨୧ ॥

ଗୁରୁଗୀତା ରୂପୀ ଶାସ୍ତ୍ର ଶାନ୍ତ କରେ
ହେ ଶିବେ ! ମୋହ ଶିଷ୍ୟର,
ଭବବନ୍ଧନରୁ ମୁକ୍ତ କରାଏ ଏ
ସ୍ୱରୂପଜ୍ଞାନ ଭଣ୍ଡାର ।୧୨୧ ।

ଯଂ ଯଂ ଚିନ୍ତୟତେ କାମଂ ତଂ ତଂ ପ୍ରାପ୍ନୋତି ନିଶ୍ଚୟମ୍ ।
ନିତ୍ୟଂ ସୌଭାଗ୍ୟଦଂ ପୁଣ୍ୟଂ ତାପତ୍ରୟକୁଳାପହମ୍ ।।୧୨୨ ।।

ବ୍ୟକ୍ତି ଯାହା-ଯାହା ଅଭିଳାଷ କରି ଏହି ଗୁରୁଗୀତାର ପଠନ ଚିନ୍ତନ କରିଥାଏ ସେ ତାହା ନିଶ୍ଚିତ ରୂପେ ପ୍ରାପ୍ତ ହୋଇଥାଏ । ଏହି ଗୁରୁଗୀତା ନିତ୍ୟ ସୌଭାଗ୍ୟ ଏବଂ ପୁଣ୍ୟ ପ୍ରଦାନକାରୀ ତଥା ତିନି ତାପ (ଆଧି-ବ୍ୟାଧି-ଉପାଧି)ର ନାଶକାରୀ ।।୧୨୨ ।।

ଯାହା ଚିନ୍ତା କରି ଗୁରୁଗୀତା ପାଠ
କରେ ବ୍ୟକ୍ତି ତାହା ମିଳେ,
ତାପତ୍ରୟ ନାଶି ସଉଭାଗ୍ୟ ପୁଣ୍ୟ
ଝୋଲିରେ ତାହାର ଢାଳେ ।୧୨୨ ।

ସର୍ବଶାନ୍ତିକରଂ ନିତ୍ୟଂ ତଥା ବନ୍ଧ୍ୟାସୁପୁତ୍ରଦମ୍ ।
ଅବୈଧବ୍ୟକରଂ ସ୍ତ୍ରୀଣାଂ ସୌଭାଗ୍ୟସ୍ୟ ବିବର୍ଧନମ୍ ।।୧୨୩ ।।

ଏହି ଗୁରୁଗୀତା ସମସ୍ତ ପ୍ରକାର ଶାନ୍ତି ଦେଇଥାଏ, ବନ୍ଧ୍ୟା ସ୍ତ୍ରୀକୁ ସୁପୁତ୍ର ପ୍ରଦାନ କରିଥାଏ, ସଧବା ସ୍ତ୍ରୀକୁ ବୈଧବ୍ୟତାରୁ ରକ୍ଷା କରିଥାଏ ଏବଂ ସୌଭାଗ୍ୟ ବୃଦ୍ଧି କରାଇଥାଏ ।।୧୨୩ ।।

ସର୍ବ ଶାନ୍ତିକର ଦିଏ ପୁତ୍ରହୀନେ
ସୁପୁତ୍ର ଶ୍ରୀଗୁରୁଗୀତା,
ସୌଭାଗ୍ୟ ବଢ଼ାଏ ନାଶେ ସଧବାର
ଦୋଷାଦୋଷ ବୈଧବ୍ୟତା ।୧୨୩ ।

ଆୟୁରାରୌଗ୍ୟମୈଶ୍ୱର୍ଯ୍ୟଂ ପୁତ୍ରପୌତ୍ରପ୍ରବର୍ଧନମ୍ ।
ନିଷ୍କାମଜାପୀ ବିଧବା ପଠେନ୍ମୋକ୍ଷମବାପ୍ନୁୟାତ୍ ।।୧୨୪ ।।

ଏହି ଗୁରୁଗୀତା ଆୟୁଷ, ଆରୋଗ୍ୟ, ଐଶ୍ୱର୍ଯ୍ୟ ଏବଂ ପୁତ୍ର-ପୌତ୍ରାଦି ବୃଦ୍ଧିକାରିଣୀ । କୌଣସି ବିଧବା ନିଷ୍କାମ ହୃଦୟରେ ଏହ ଗୁରୁଗୀତାର ଜପ-ପାଠ କଲେ ତାକୁ ମୋକ୍ଷ ପ୍ରାପ୍ତି ହୁଏ ।।୧୨୪ ।।

ଗୁରୁଗୀତା ଆୟୁ ଆରୋଗ୍ୟ, ଐଶ୍ୱର୍ଯ୍ୟ
ପୁତ୍ର-ପୌତ୍ରାଦି ବଢ଼ାଏ,
ନିଷ୍କାମ ହୃଦୟେ ବିଧବା ଜପିଲେ
ମୋକ୍ଷ ତାକୁ ପ୍ରାପ୍ତି ହୁଏ ।୧୨୪ ।

ଅବୈଧବ୍ୟଂ ସକାମା ତୁ ଲଭତେ ଚାନ୍ୟଜନ୍ମନି ।
ସର୍ବଦୁଃଖଭୟଂ ବିଘ୍ନଂ ନାଶୟେତ୍ତାପହାରକମ୍ ।।୧୨୫ ।।

ଯଦି ସେହି ବିଧବା ସକାମ ହୋଇ ଜପ କରେ ତେବେ ଆଗାମୀ ଜନ୍ମରେ ତାକୁ ସନ୍ତାପରହିତ ଅବୈଧବ୍ୟ (ସୌଭାଗ୍ୟ) ପ୍ରାପ୍ତ ହୁଏ । ତା'ର ସମସ୍ତ ଦୁଃଖ, ଭୟ, ବିଘ୍ନ ଏବଂ ସନ୍ତାପ ନାଶ ହୁଏ ।।୧୨୫ ।।

ସକାମ ଜପିଲେ ଅବୈଧବ୍ୟ ଲଭେ
ସେ ବିଧବା ପର ଜନ୍ମେ,
ଦୁଃଖଭୟ ବିଘ୍ନ ସନ୍ତାପ ବିହୀନ
ସୁଖ ଆସେ ତା' ଜୀବନେ । ୧୨୫ ।

ସର୍ବ ପାପପ୍ରଶମନଂ ଧର୍ମ କାମାର୍ଥ ମୋକ୍ଷଦମ୍ ।
ଯଂ ଯଂ ଚିନ୍ତୟତେ କାମଂ ତଂ ତଂ ପ୍ରାପ୍ନୋତି ନିଶ୍ଚିତମ ।।୧୨୬ ।।

ଏହି ଗୁରୁଗୀତା ପାଠ ଦ୍ୱାରା ସମସ୍ତ ପାପ ନାଶ ହୁଏ, ଧର୍ମ, ଅର୍ଥ, କାମ ଏବଂ ମୋକ୍ଷ ପ୍ରାପ୍ତ କରାଏ । କୌଣସି ଆକାଂକ୍ଷା ରଖି ଏହା ପାଠ କଲେ ତାହା ଅବଶ୍ୟ ସିଦ୍ଧ ହୋଇଥାଏ ।।୧୨୬ ।।

ସର୍ବ ପାପ ନାଶ ହୋଇ ଧର୍ମ ଅର୍ଥ
କାମ ମୋକ୍ଷ ମିଳି ଥାଏ,
ମନେ ଆଶା ରଖି ପାଠ କଲେ ବାଂଛା
ଅଚୀରେ ପୂରଣ ହୁଏ ।୧୨୬ ।

ଲିଖିତ୍ୱା ପୂଜୟେଦ୍ୟସ୍ତୁ ମୋକ୍ଷଶ୍ରିୟମବାପ୍ନୁୟାତ୍ ।

ଗୁରୁଭକ୍ତିର୍ବିଶେଷେଣ ଜାୟତେ ହୃଦି ସର୍ବଦା ॥୧ ୨ ୭ ॥

ଯଦି କୌଣସି ବ୍ୟକ୍ତି ଏହି ଗୁରୁଗୀତାକୁ ଲେଖି ପୂଜା କରେ ତେବେ ତାଙ୍କୁ ଲକ୍ଷ୍ମୀ ଏବଂ ମୋକ୍ଷ ପ୍ରାପ୍ତି ହୋଇଥାଏ । ବିଶେଷ କରି ତାଙ୍କ ହୃଦୟରେ ସଦା ସର୍ବଦା ଗୁରୁଭକ୍ତି ଉତ୍ପନ୍ନ ହୋଇଥାଏ ॥୧ ୨ ୭ ॥

ଗୁରୁଗୀତା ଲେଖି ପୂଜା କଲେ ଲକ୍ଷ୍ମୀ
ମୋକ୍ଷ ପ୍ରାପ୍ତ ହୋଇଥାଏ ।
ପୂଜକ ଭକତ ମନ ହୃଦ ଗୁରୁ
ଭକତିରେ ଭରିଯାଏ ।୧ ୨ ୭ ।

ଜପନ୍ତି ଶାକ୍ତାଃ ସୌରାଶ୍ଚ ଗାଣପତ୍ୟାଶ୍ଚ ବୈଷ୍ଣବାଃ ।
ଶୈବାଃ ପାଶୁପତାଃ ସର୍ବେ ସତ୍ୟଂ ସତ୍ୟଂ ନ ସଂଶୟଃ ॥୧ ୨ ୮ ॥

ଶକ୍ତି, ସୂର୍ଯ୍ୟ, ଗଣପତି, ଶିବ ଏବଂ ପଶୁପତିଙ୍କ ଉପାସକମାନେ ଏହି ଗୁରୁଗୀତା ପାଠ କରିଥାନ୍ତି । ଏହା ସତ୍ୟ, ସତ୍ୟ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ॥୧ ୨ ୮ ॥

ଶାକ୍ତ ସୌର ଶୈବ ଗାଣପତ୍ୟ ବିଷ୍ଣୁ
ପୂଜାକାରୀ ପାଶୁପତ୍ୟ,
ଶ୍ରୀଗୁରୁଗୀତାଙ୍କ କରିଥାନ୍ତି ପାଠ
ନିସନ୍ଦେହ ସତ୍ୟ ସତ୍ୟ ।୧ ୨ ୮ ।

ଜପଂ ହୀନାସନଂ କୁର୍ବନ୍ ହୀନକର୍ମାଫଳପ୍ରଦମ୍ ।
ଗୁରୁଗୀତା ପ୍ରୟାଣେ ବା ସଂଗ୍ରାମେ ରିପୁସଂକଟେ ॥୧ ୨ ୯ ॥
ଜପନ୍ ଜୟମବାପ୍ନୋତି ମରଣେ ମୁକ୍ତିଦାୟିକା ।
ସର୍ବକର୍ମାଣି ସିଦ୍ଧ୍ୟନ୍ତି ଗୁରୁପୁତ୍ରେ ନ ସଂଶୟଃ ॥୧୩୦ ॥

ବିନା ଆସନ ଉପରେ ବସି ଯେଉଁ ଜପ କରାଯାଏ ତାହା ନୀଚକର୍ମ ଏବଂ ନିଷ୍ଫଳ ହୋଇଥାଏ । ପ୍ରୟାଣ ସମୟରେ, ସଂଗ୍ରାମ ବେଳେ ତଥା ଶତ୍ରୁମାନଙ୍କ ଉପଦ୍ରବ ବେଳେ ଗୁରୁଗୀତା ପାଠ, ଜପ କରିବା ଦ୍ୱାରା ବିଜୟ ମିଳିଥାଏ । ମୃତ୍ୟୁ ସମୟରେ ପାଠ କଲେ

ମୋକ୍ଷ ମିଳିଥାଏ । ଗୁରୁପୁତ୍ର(ଶିଷ୍ୟ)ଙ୍କର ସମସ୍ତ କର୍ମ ସିଦ୍ଧ ହୋଇଥାଏ ଏଥିରେ ସନ୍ଦେହ ନାହିଁ ॥୧୨୯, ୧୩୦ ॥

ବିନା ଆସନରେ ଜପ ନୀଚକର୍ମ
ବୋଲାଏ ହୁଏ ନିଷ୍ଫଳ,
ପ୍ରୟାଣେ ସଂଗ୍ରାମେ ରିପୁ ସଙ୍କଟରେ
ଗୁରୁଗୀତା ଦିଏ ବଳ ।୧୨୯ ।
ଜପିଲେ ମିଳଇ ଜୟ ମରଣରେ
ମିଳଇ ଅଖଣ୍ଡ ମୁକ୍ତି,
ଶିଷ୍ୟର ସମସ୍ତ କର୍ମ ହୁଏ ସିଦ୍ଧ
ଏଥିରେ ନାହିଁ ଅତ୍ୟୁକ୍ତି ।୧୩୦ ।

ଗୁରୁମନ୍ତ୍ରୋ ମୁଖେ ଯସ୍ୟ ତସ୍ୟ ସିଦ୍ଧ୍ୟନ୍ତି ନାନ୍ୟଥା ।
ଦୀକ୍ଷୟା ସର୍ବ କର୍ମାଣି ସିଦ୍ଧ୍ୟନ୍ତି ଗୁରୁପୁତ୍ରକେ ॥୧୩୧ ॥

ଯାହାଙ୍କ ମୁଖରେ ଗୁରୁମନ୍ତ୍ର ଥାଏ ତାଙ୍କର ସର୍ବକର୍ମ ସିଦ୍ଧ ହୋଇଥାଏ, ଅନ୍ୟମାନଙ୍କର ହୋଇ ନ ଥାଏ । ଦୀକ୍ଷା କାରଣରୁ ଶିଷ୍ୟର ସର୍ବ କାର୍ଯ୍ୟ ସିଦ୍ଧ ହୋଇଥାଏ ॥୧୩୧ ॥

ଗୁରୁ ମନ୍ତ୍ର ମୁଖେ ଯା'ର ତା'ରେ ସିଦ୍ଧି
ମିଳେ ଅନ୍ୟେ ମିଳେ ନାହିଁ,
ଦୀକ୍ଷା କାରଣରୁ ସର୍ବ କାର୍ଯ୍ୟ ସିଦ୍ଧ
ଶିଷ୍ୟଟିର ହୋଇ ଥାଇଁ ।୧୩୧ ।

ଭବମୂଳବିନାଶାୟ ଚାଷ୍ଟପାଶନିବୃତ୍ତୟେ ।
ଗୁରୁଗୀତାମ୍ଭସି ସ୍ନାନଂ ତତ୍ତ୍ୱଜ୍ଞଃ କୁରୁତେ ସଦା ॥୧୩୨ ॥
ସର୍ବଶୁଦ୍ଧଃ ପବିତ୍ରୋଽସୌ ସ୍ୱଭାବାଦ୍ୟତ୍ର ତିଷ୍ଠତି ।
ତତ୍ର ଦେବଗଣାଃ ସର୍ବେ କ୍ଷେତ୍ରପିଠେ ଚରନ୍ତି ଚ ॥୧୩୩ ॥

ତତ୍ତ୍ୱଜ୍ଞ ପୁରୁଷମାନେ ସଂସାରରୂପୀ ବୃକ୍ଷର ବୀଜ ନଷ୍ଟ କରିବା ପାଇଁ ଏବଂ ଅଷ୍ଟବନ୍ଧନ ଯଥା-ସଂଶୟ, ଦୟା, ଭୟ, ସଂକୋଚ, ନିନ୍ଦା, ପ୍ରତିଷ୍ଠା, କୁଳାଭିମାନ ଏବଂ ସମ୍ପତ୍ତିରୁ ନିବୃତ ହେବାପାଇଁ ଗୁରୁଗୀତାରୂପୀ ଗଙ୍ଗାରେ ସଦା ସର୍ବଦା ସ୍ନାନ କରୁଥାନ୍ତି । ସ୍ୱାଭାବିକ ଭାବେ ସର୍ବଦା ଶୁଦ୍ଧ ଏବଂ ପବିତ୍ର ଏହି ମହାପୁରୁଷମାନେ ଯେଉଁଠାରେ ବାସ କରନ୍ତି ସେହି ତୀର୍ଥରେ ଦେବତାମାନେ ମଧ୍ୟ ବିଚରଣ କରନ୍ତି ।। ୧୩୨, ୧୩୩ ।।

ଭବମୂଳନାଶ କରିବା ସହିତ
ନାଶିବାକୁ ଅଷ୍ଟ ପାଶ,
ଗୁରୁଗୀତା ରୂପୀ ଗଙ୍ଗାନୀରେ ସ୍ନାନ
କରେ ତତ୍ତ୍ୱଜ୍ଞ ପୁରୁଷ ।୧୩୨ ।
ସର୍ବଶୁଦ୍ଧ ପୂତ ଏ ମହାପୁରୁଷ
କରିଥା'ନ୍ତି ଯହିଁ ବାସ,
ସେ ତୀର୍ଥ ସ୍ଥଳରେ ଦେବତା ସକଳ
ବିଚରନ୍ତି ହୋଇ ତୋଷ ।୧୩୩ ।

ଆସନାସ୍ଥା ଶୟାନା ବା ଗଚ୍ଛନ୍ତସ୍ତିଷ୍ଠନ୍ତୋଽପି ବା ।
ଅଶ୍ୱାରୂଢ଼ାଃ ଗଜାରୂଢ଼ାଃ ସୁଷୁପ୍ତା ଜାଗ୍ରତୋଽପି ବା ।।୧୩୪ ।।
ଶୁଚିଭୂତା ଜ୍ଞାନବନ୍ତୋ ଗୁରୁଗୀତାଂ ଜପନ୍ତି ଯେ ।
ତେଷାଂ ଦର୍ଶନସଂସ୍ପର୍ଶାତ୍ ପୁନର୍ଜନ୍ମ ନ ବିଦ୍ୟତେ ।।୧୩୫ ।।

ଆସନ ଉପରେ ବସି ବା ଶୋଇ, ଛିଡ଼ା ହୋଇ ବା ଚାଲୁଥିବା ସମୟରେ, ହାତୀ ବା ଘୋଡ଼ା ଉପରେ ବସି, ଜାଗ୍ରତ ବା ସୁପ୍ତ ଅବସ୍ଥାରେ ଯେଉଁ ପବିତ୍ର ଜ୍ଞାନବାନ ପୁରୁଷ ଏହି ଗୁରୁଗୀତା ଜପ-ପାଠ କରିଥାନ୍ତି ସେମାନଙ୍କର ଦର୍ଶନ ଏବଂ ସଂସ୍ପର୍ଶ ଦ୍ୱାରା ପୁନର୍ଜନ୍ମ ହୋଇ ନ ଥାଏ ।।୧୩୪,୧୩୫ ।।

ଆସନେ ଥାଇ ବା ଶୋଇ ଚାଲି ଛିଡ଼ା
ହୋଇ ଚଢ଼ି ଘୋଡ଼ା ହାତୀ,

ଜାଗ୍ରତ ସୁସପ୍ତ ଅବସ୍ଥାରେ ଜ୍ଞାନୀ
ଗୁରୁଗୀତା ଯେ ଜପନ୍ତି ।୧୩୪ ।
ଶୁଚୀବନ୍ତ ସେହି ପୁରୁଷ ଦର୍ଶନ
ସ୍ପର୍ଶନ କରନ୍ତି ଯିଏ,
ତାଙ୍କ ପୁଣ୍ୟ ଫଳେ ଇହସଂସାରରେ
ପୁନର୍ଜନ୍ମ ସେ ନ ପାଏ ।୧୩୫ ।

କୁଶଦୂର୍ବାସନେ ଦେବି ହ୍ୟାସନେ ଶୁଭ୍ରକମ୍ବଳେ ।
ଉପବିଶ୍ୟ ତତୋ ଦେବି ଜପଦେକାଗ୍ରମାନସଃ ।।୧୩୬ ।।

ହେ ଦେବୀ ! କୁଶ ଏବଂ ଦୁବ ଦ୍ୱାରା ନିର୍ମିତ ଆସନ ଉପରେ ଧଳା କମ୍ବଳ ବିଛାଇ ତା ଉପରେ ବସି ଏକାଗ୍ର ମନରେ ଗୁରୁଗୀତା ଜପ କରିବା ଉଚିତ ।।୧୩୬ ।।

ଧବଳ କମ୍ବଳ ବିଛା ଆସନ ଯା’
କୁଶ ଦୁବରେ ନିର୍ମିତ,
ହେ ଦେବୀ ! ଏକାଗ୍ରେ ବସି ଗୁରୁଗୀତା
ଜପ କରିବା ଉଚିତ ।୧୩୬ ।

ଶୁକ୍ଳଂ ସର୍ବତ୍ର ବୈ ପ୍ରୋକ୍ତଂ ବଶ୍ୟେ ରକ୍ତାସନଂ ପ୍ରିୟେ ।
ପଦ୍ମାସନେ ଜପେନ୍ନିତ୍ୟଂ ଶାନ୍ତିବଶ୍ୟକରଂ ପରମ୍ ।।୧୩୭ ।।

ସାଧାରଣତଃ ଧଳା ଆସନ ବ୍ୟବହାର କରିବା ଉଚିତ କିନ୍ତୁ ବଶୀକରଣ ନିମିତ୍ତ ଲାଲ ଆସନ ଆବଶ୍ୟକ । ହେ ପ୍ରିୟେ ! ଶାନ୍ତି ଏବଂ ବଶୀକରଣ ପାଇଁ ପ୍ରତ୍ୟେକ ଦିନ ପଦ୍ମାସନରେ ବସି ଜପ କରିବା ଉଚିତ ।।୧୩୭ ।।

ଶୁକ୍ଳାସନ ସର୍ବ କାଳେ ବ୍ୟବହାର୍ଯ୍ୟ
ବଶୀକରଣାର୍ଥେ ଲାଲ,
ପଦ୍ମାସନେ ନିତ୍ୟ ଜପ ପ୍ରିୟେ ! ଶାନ୍ତି
ବଶିକରଣାର୍ଥେ ଭଲ ।୧୩୭ ।

ବସ୍ତ୍ରାସନେ ଚ ଦରିଦ୍ର୍ୟଂ ପାଷାଣେ ରୋଗସଂଭବଃ ।
ମେଦିନ୍ୟାଂ ଦୁଃଖମାପ୍ନୋତି କାଷ୍ଠେ ଭବତି ନିଷ୍ଫଳମ୍ ।।୧୩୮ ।।

କପଡ଼ା ନିର୍ମିତ ଆସନ ଉପରେ ବସି ଜପକଲେ ଦାରିଦ୍ର୍ୟତା ଆସେ, ପଥର ଉପରେ ବସି ଜପକଲେ ରୋଗ, ଭୂମି ଉପରେ ବସି ଜପ କରିବା ଦ୍ୱାରା ଦୁଃଖ ଆସିଥାଏ ଏବଂ କାଠ ତିଆରି ଆସନ ଉପରେ ବସି ଜପ କଲେ ତାହା ନିଷ୍ଫଳ ହୋଇଥାଏ ।।୧୩୮ ।।

କପଡ଼ା ନିର୍ମିତ ଆସନେ ଦାରିଦ୍ର୍ୟ
ପଥର ଉପରେ ବ୍ୟାଧି,
ଭୂମିପରେ ଦୁଃଖ କାଷ୍ଠାସନେ ଜପ
କରିଲେ ନ ମିଳେ ସିଦ୍ଧି ।୧୩୮ ।

କୃଷ୍ଣାଜିନେ ଜ୍ଞାନସିଦ୍ଧିଃ ମୋକ୍ଷଶ୍ରୀଃ ବ୍ୟାଘ୍ରଚର୍ମଣି ।
କୁଶାସନେ ଜ୍ଞାନସିଦ୍ଧିଃ ସର୍ବ ସିଦ୍ଧିସ୍ତୁ କମ୍ବଳେ ।। ୧୩୯ ।।

କଳା ମୃଗଚର୍ମ ଏବଂ କୁଶାସନ (ଦର୍ଭାସନ) ଉପରେ ବସି ଜପକରିବା ଦ୍ୱାରା ଜ୍ଞାନସିଦ୍ଧି ହୋଇଥାଏ, ବ୍ୟାଘଚର୍ମ ଉପରେ ବସି ଜପ କରିବା ଦ୍ୱାରା ମୁକ୍ତିପ୍ରାପ୍ତ ହୋଇଥାଏ କିନ୍ତୁ କମ୍ବଳ ଆସନ ଉପରେ ବସି ଜପ କଲେ ସର୍ବସିଦ୍ଧି ପ୍ରାପ୍ତ ହୋଇଥାଏ ।।୧୩୯ ।।

ବ୍ୟାଘ୍ର ଚର୍ମେ ଜପ କଲେ ମିଳେ ମୋକ୍ଷ,
କୃଷ୍ଣାଜିନେ ଜ୍ଞାନସିଦ୍ଧି,
କମ୍ବଳ ଆସନ ପରେ ବସି ଜପ
କଲେ ମିଳେ ସର୍ବସିଦ୍ଧି ।୧୩୯ ।

ଆଗ୍ନେୟ୍ୟାଂକର୍ଷଣଂ ଚୈବ ବାୟବ୍ୟାଂ ଶତ୍ରୁନାଶନମ୍ ।
ନୈଋତ୍ୟାଂ ଦର୍ଶନଂ ଚୈବ ଈଶାନ୍ୟାଂ ଜ୍ଞାନ ମେବ ଚ ।।୧୪୦ ।।

ଅଗ୍ନିକୋଣ ଆଡ଼କୁ ମୁହଁ କରି ଜପ-ପାଠ ଦ୍ୱାରା ଆକର୍ଷଣ, ବାୟବ୍ୟକୋଣ ଆଡ଼କୁ ମୁହଁକରି ପାଠକଲେ ଶତ୍ରୁନାଶ, ନୈଋତ୍ୟ କୋଣ ଆଡ଼କୁ ମୁହଁ କରି ପାଠକଲେ ଦର୍ଶନ ଏବଂ ଐଶାନ୍ୟ କୋଣ ଆଡ଼କୁ ମୁହଁକରି ଜପ-ପାଠ କରିବା ଦ୍ୱାରା ଜ୍ଞାନ ପ୍ରାପ୍ତି ହୋଇଥାଏ ।।୧୪୦ ।।

ଅଗ୍ନିକୋଣେ ମୁଖ କଲେ ଆକର୍ଷଣ

ବାୟବ୍ୟେ ଶତ୍ରୁନାଶନ,
ନୈରତେ ଦର୍ଶନ ଐଶାନ୍ୟକୁ ଚାହିଁ
ଜପ କଲେ ମିଳେ ଜ୍ଞାନ ।୧୪୦ ।

ଉଦଂମୁଖଃ ଶାନ୍ତି ଜାପ୍ୟେ ବଶ୍ୟେ ପୂର୍ବ ମୁଖସ୍ତଥା ।
ଯାମ୍ୟେ ତୁ ମାରଣଂ ପ୍ରୋକ୍ତଂ ପଶ୍ଚିମେ ଚ ଧନାଗମଃ ।।୧୪୧ ।।

ଉତ୍ତର ଦିଗକୁ ମୁହଁ କରି ପାଠକଲେ ଶାନ୍ତି, ପୂର୍ବଦିଗକୁ ମୁହଁ କରି ପାଠକଲେ ବଶୀକରଣ, ଦକ୍ଷିଣ ଦିଗକୁ ଚାହିଁ ପାଠକଲେ ମାରଣ ସିଦ୍ଧି ଏବଂ ପଶ୍ଚିମ ଦିଗକୁ ମୁହଁକରି ଜପ-ପାଠ କଲେ ଧନ ପ୍ରାପ୍ତି ହୋଇଥାଏ ।।୧୪୧ ।।

ଉତ୍ତରରୁ ଶାନ୍ତି ପଶ୍ଚିମରୁ ଧନ
ପୂର୍ବରୁ ବଶିକରଣ,
ଦକ୍ଷିଣକୁ ଚାହିଁ ଜପ ପାଠ ସିଦ୍ଧି
ମାରଣେ କରେ ପ୍ରଦାନ ।୧୪୧ ।

ଇତି ଶ୍ରୀ ସ୍କୋନ୍ଦୋତ୍ତର ଖଣ୍ଡେ ଉମାମହେଶ୍ୱର ସମ୍ବାଦେ ଶ୍ରୀ ଗୁରୁଗୀତୟାଂ
ଦ୍ୱିତୀୟୋଃଧ୍ୟାୟଃ ।

ଏହି ପରି ଭାବରେ ସ୍କାନ୍ଦୋତ୍ତର ଖଣ୍ଡରେ ଶିବ-ପାର୍ବତୀ କଥୋପକଥନର
ଶ୍ରୀଗୁରୁଗୀତାର ଦ୍ୱିତୀୟ ଅଧ୍ୟାୟ ଶେଷ ହେଲା ।

## ଅଥ ତୃତୀୟୋଽଧ୍ୟାୟଃ

ଅଥ କାମ୍ୟକପସ୍ଥାନଂ କଥୟାମି ବରାନନେ !
ସାଗରାନ୍ତେ ସରିତ୍ତୀରେ ତୀର୍ଥେ ହରିହରାଳୟେ ।।୧୪୨ ।।
ଶକ୍ତିଦେବାଳୟେ ଗୋଷ୍ଠେ ସର୍ବଦେବାଳୟେ ଶୁଭେ ।
ବଟସ୍ୟ ଧାତ୍ର୍ୟା ମୂଳେ ବା ମଠେ ବୃନ୍ଦାବନେ ତଥା ।।୧୪୩ ।।

ପବିତ୍ରେ ନିର୍ମଳେ ଦେଶେ ନିତ୍ୟାନୁଷ୍ଠାନତୋଽପି ବା ।
ନିର୍ବେଦନେନ ମୌନେନ ଜପମେତତ୍ ସ୍ୱମାରଭେତ୍ ।।୧୪୪ ।।

## ତୃତୀୟ ଅଧ୍ୟାୟ

ହେ ସୁମୁଖୀ ! ଏବେ ସକାମୀମାନଙ୍କ ପାଇଁ ଜପସ୍ଥାନର ବର୍ଣ୍ଣନା କରୁଛି । ସାଗର କିମ୍ବା ନଦୀକୂଳ, ତୀର୍ଥସ୍ଥାନ, ଶିବାଳୟ, ବିଷ୍ଣୁ ବା ଦେବୀ ମନ୍ଦିର, ଗୋଶାଳା, ସମସ୍ତ ଦେବାଳୟ, ବଟବୃକ୍ଷ ବା ଅଳାବୃକ୍ଷ ତଳେ, ମଠ, ତୁଳସୀବଣ ଏବଂ ପବିତ୍ର ନିର୍ମଳ ସ୍ଥାନରେ ନିତ୍ୟାନୁଷ୍ଠାନ ପାଇଁ ଅନାସକ୍ତ ହୋଇ ମୌନପୂର୍ବକ ଏହି ଗୁରୁଗୀତା ଜପ ଆରମ୍ଭ କରିବା ଉଚିତ ।।୧୪୨,୧୪୩,୧୪୪ ।।

ହେ ସୁମୁଖୀ ! ଏବେ ସକାମୀଙ୍କ ପାଇଁ
ବର୍ଣ୍ଣୁ ଅଛି ଜପ ସ୍ଥାନ,
ହରିହରାଳୟ ସାଗର ସରିତ
ତୀର ତୀର୍ଥସ୍ଥଳ ମାନ ।୧୪୨ ।
ଶକ୍ତି ମନ୍ଦିର ଗୋ- ଶାଳା ଦେବାଳୟ
ବଟ ଅଁଳା ବୃକ୍ଷ ମୂଳ,
ତୁଳସୀ କାନନ ମଠ ଆଦି ସ୍ଥାନ
ଜଳାଶ୍ରୟାଦିର କୂଳ ।୧୪୩ ।
ପବିତ୍ର ନିର୍ମଳ ସ୍ଥଳ ଉପଯୁକ୍ତ
ନିତ୍ୟ ଅନୁଷ୍ଠାନ ପାଇଁ,
ଅନାସକ୍ତେ ମୌନେ ଜପ ଆରମ୍ଭିବ
ସ୍ନାନ ଶୌଚ ଶୁଚି ହୋଇ ।୧୪୪ ।

ଜାପ୍ୟେନ ଜୟମାପ୍ନୋତି ଜପସିଦ୍ଧିଂ ଫଳଂ ତଥା ।
ହୀନକର୍ମ ତ୍ୟଜେତ୍ସର୍ବଂ ଗର୍ହିତସ୍ଥାନମେବ ଚ ।।୧୪୫ ।।

ଜପଦ୍ୱାରା ଜୟପ୍ରାପ୍ତି ହୋଇଥାଏ ତଥା ଜପର ସିଦ୍ଧିରୂପକ ଫଳ ମିଳିଥାଏ । ଜପାନୁଷ୍ଠାନ ସମୟରେ ସମସ୍ତ ନୀଚ କର୍ମ ଏବଂ ନିନ୍ଦିତ ସ୍ଥାନ ତ୍ୟାଗ କରିବା ଉଚିତ ॥୧୪୫ ॥

ଜପ ଦ୍ୱାରା ଜୟ ପ୍ରାପ୍ତି ହୋଇଥାଏ
ମିଳଇ ବି ସିଦ୍ଧି ଫଳ,
ଜପ ଅନୁଷ୍ଠାନ କାଳେ ନୀଚ କର୍ମ
ତେଜିବ ନିନ୍ଦିତ ସ୍ଥଳ ।୧୪୫ ।

ଶ୍ମଶାନେ ବିଲ୍ୱମୂଳେ ବା ବଟମୂଳାନ୍ତିକେ ତଥା ।
ସିଦ୍ଧ୍ୟନ୍ତି କାନକେ ମୂଳେ ଚୂତବୃକ୍ଷସ୍ୟସନ୍ନିଧୌ ॥୧୪୬ ॥

ଶ୍ମଶାନରେ, ବେଲଗଛ, ବରଗଛ ବା କନକ ବୃକ୍ଷର ତଳେ ଏବଂ ଆମ୍ବଗଛ ପାର୍ଶ୍ୱରେ ଜପ କରିବା ଦ୍ୱାରା ଶୀଘ୍ର ସିଦ୍ଧି ପ୍ରାପ୍ତ ହୋଇଥାଏ ॥୧୪୬ ॥

ଶ୍ମଶାନେ କନକ ବେଲ ବର ଆମ୍ବ
ବୃକ୍ଷ ମୂଳେ କଲେ ଧ୍ୟାନ,
ଶୀଘ୍ର ସିଦ୍ଧି ପ୍ରାପ୍ତ ହୁଅଇ ସାଧକ
ଘୋଷି ରଖିଥାଅ ମନ ।୧୪୬ ।

ଆକଳ୍ପଜନ୍ମକୋଟୀନାଂ ଯଜ୍ଞବ୍ରତତପଃ କ୍ରିୟାଃ ।
ତାଃ ସର୍ବାଃ ସଫଳା ଦେବି ଗୁରୁସଂତୋଷମାତ୍ରତଃ ॥୧୪୭ ॥

ହେ ଦେବୀ ! କଳ୍ପ ସମୟ ପର୍ଯ୍ୟନ୍ତ, କୋଟୀ ଜନ୍ମର ଯଜ୍ଞ, ବ୍ରତ, ତପ ଏବଂ ଶାସ୍ତ୍ରୋକ୍ତ କ୍ରିୟା, ଏ ସମସ୍ତ ଶ୍ରୀ ଗୁରୁଦେବଙ୍କ ସନ୍ତୋଷ ମାତ୍ରକେ ସଫଳ ହୋଇଯାଏ ॥୧୪୭ ॥

କୋଟୀ ଜନମର ଯଜ୍ଞ ବ୍ରତ ତପ
ଆକଳ୍ପ ଯା କରାଯାଏ,
ଶ୍ରୀଗୁରୁ ଦେବଙ୍କ ସନ୍ତୋଷ ମାତ୍ରକେ
ନିମିଷେ ସଫଳ ହୁଏ ।୧୪୭ ।

ମନ୍ଦଭାଗ୍ୟା ହ୍ୟଶକ୍ତାଶ୍ଚ ଯେ ଜନା ନାନୁମନ୍ୱତେ ।
ଗୁରୁସେବାସୁ ବିମୁଖାଃ ପଚ୍ୟନ୍ତେ ନରକେଃଶୁଚୌ ॥୧୪୮ ॥

ଭାଗ୍ୟହୀନ, ଶକ୍ତିହୀନ ଏବଂ ଗୁରୁସେବାରେ ବିମୁଖ ଥିବା ଯେଉଁ ବ୍ୟକ୍ତି ମାନେ ଏହି ଉପଦେଶ ମାନନ୍ତି ନାହିଁ ସେମାନେ ଘୋର ନରକରେ ପଡ଼ିଥାନ୍ତି ॥୧୪୮ ॥

ଭାଗ୍ୟହୀନ ଗୁରୁ ସେବାରୁ ବିମୁଖ
ଶକ୍ତିହୀନ ପ୍ରାଣୀ ଯେତେ,
ଏହି ଉପଦେଶ ନ ମାନି ପଡ଼ନ୍ତି
ଘୋର ନରକେ ସାକ୍ଷାତେ ।୧୪୮ ।

ବିଦ୍ୟା ଧନଂ ବଳଂ ଚୈବ ତେଷାଂ ଭାଗ୍ୟଂ ନିରର୍ଥକମ୍ ।
ଯେଷାଂ ଗୁରୁକୃପା ନାସ୍ତି ଅଧୋ ଗଚ୍ଛନ୍ତି ପାବିତି ॥୧୪୯ ॥

ଯାହା ଉପରେ ଶ୍ରୀଗୁରୁଦେବଙ୍କ କୃପା ନାହିଁ ତାର ବିଦ୍ୟା, ଧନ, ବଳ ଏବଂ ଭାଗ୍ୟ ନିରର୍ଥକ । ହେ ପାର୍ବତୀ ! ତାର ଅଧପତନ ହୋଇଥାଏ ॥୧୪୯ ॥

ଯା' ପରେ ଗୁରୁଙ୍କ କୃପା ନାହିଁ ତାର
ଭାଗ୍ୟ ବଳ ବିଦ୍ୟା ଧନ,
ସବୁ ନିରର୍ଥକ ହୁଏ ହେ ପାର୍ବତୀ !
ହୁଏ ତା' ଅଧପତନ ।୧୪୯ ।

ଧନ୍ୟା ମାତା ପିତା ଧନ୍ୟୋ ଗୋତ୍ରଂ ଧନ୍ୟଂ କୁଳୋଦ୍‌ଭବଃ ।
ଧନ୍ୟା ଚ ବସୁଧା ଦେବି ଯତ୍ର ସ୍ୟାଦ୍ ଗୁରୁଭକ୍ତତା ॥୧୫୦ ॥

ଯାହାଙ୍କର ହୃଦୟରେ ଗୁରୁଭକ୍ତି ଥାଏ ତାଙ୍କର ମାତା, ପିତା, ବଂଶ ଧନ୍ୟ । ତାଙ୍କ ବଂଶରେ ଜନ୍ମ ନେଉଥିବା ଜୀବାତ୍ମାମାନେ ଧନ୍ୟ, ସମଗ୍ର ବସୁଧା ମାତା ମଧ୍ୟ ଧନ୍ୟ ॥୧୫୦ ॥

ଧନ୍ୟ ତା'ର ପିତା ଧନ୍ୟ ତା'ର ମାତା
ଗୋତ୍ର କୁଳ ବଂଶ ଧନ୍ୟ,

ଗୁରୁ ଭକ୍ତ ଯହିଁ ଜନ୍ମ ନିଏ ସେହି

ମାଟି ଧରାରେ ଅନନ୍ୟ ।୧୫୦ ।

ଶରୀରମିନ୍ଦ୍ରିୟଂ ପ୍ରାଣଞ୍ଚାର୍ଥଃ ସ୍ୱଜନ ବନ୍ଧୁତାମ୍ ।
ମାତୃକୁଳଂ ପିତୃକୁଳଂ ଗୁରୁରେବ ନ ସଂଶୟଃ ।।୧୫୧ ।।

ଶରୀର, ଇନ୍ଦ୍ରିୟ, ପ୍ରାଣ, ଧନ, ସ୍ୱଜନ, ବନ୍ଧୁ-ବାନ୍ଧବ, ମାତୃକୁଳ, ପିତୃକୁଳ, ଏ ସମସ୍ତ ଗୁରୁଦେବ ହିଁ ଅଟନ୍ତି ଏଥିରେ ସନ୍ଦେହ ନାହିଁ ।।୧୫୧ ।।

ଶରୀର ଇନ୍ଦ୍ରିୟ ପ୍ରାଣ ମାତୃକୁଳ

ପିତୃକୁଳ ବନ୍ଧୁ ଧନ,

ସ୍ୱଜନ ଆବର ଗୁରୁ ଦେବ ସ୍ୱୟଂ

ସର୍ବରୂପେ ବିଦ୍ୟମାନ ।୧୫୧ ।

ଗୁରୁର୍ଦ୍ଦେବୋ ଗୁରୁର୍ଧର୍ମୋ ଗୁରୌ ନିଷ୍ଠା ପରଂ ତପଃ ।
ଗୁରୋଃ ପରତରଂ ନାସ୍ତି ତ୍ରିବାରଂ କଥୟାମି ତେ ।।୧୫୨ ।।

ଗୁରୁ ହେଉଛନ୍ତି ଦେବତା, ଗୁରୁ ହେଉଛନ୍ତି ଧର୍ମ, ଏବଂ ଗୁରୁଙ୍କ ପ୍ରତି ନିଷ୍ଠା ହିଁ ପରମ ତପ । ଗୁରୁଙ୍କଠାରୁ ଆଉ ଅଧିକ କିଛି ନାହିଁ ଏହା ମୁଁ ତ୍ରିବାର କହୁଛି ।।୧୫୨ ।।

ଗୁରୁ ହିଁ ଦେବତା ଗୁରୁ ଧର୍ମ ଗୁରୁ

ନିଷ୍ଠା ହିଁ ତପ ପରମ,

ଗୁରୁ ହୁଁ ଅଧିକ ନାହିଁ ତିନିବାର

କହୁଛି ସମ୍ମୁଖେ ତୁମ ।୧୫୩ ।

ସମୁଦ୍ରେ ବୈ ଯଥା ତୋୟଂ କ୍ଷୀରେ କ୍ଷୀରଂ ଘୃତେ ଘୃତମ ।
ଭିନ୍ନେ କୁମ୍ଭେ ଯଥାଽଽକାଶଃ ତଥାଽଽତ୍ମା ପରମାତ୍ମନି ।।୧୫୩ ।।

ଯେଉଁ ପ୍ରକାର ସମୁଦ୍ରରେ ପାଣି, ଦୁଧରେ ଦୁଧ, ଘିଅରେ ଘିଅ, ଘଟ ଘଟ ଅନ୍ତରରେ ଆକାଶ ଅପରିବର୍ତନୀୟ ଓ ଅଭିନ୍ନ ଅଟେ । ଠିକ୍ ସେହିପରି ଜୀବାତ୍ମା ଓ ପରମାତ୍ମା ଏକ ଏବଂ ଅଭିନ୍ନ ।।୧୫୩ ।।

ବିନ୍ଦେ ଜଳ କ୍ଷୀରେ କ୍ଷୀର ଘୃତେ ଘୃତ
ପ୍ରତି ଘଟରେ ଆକାଶ,
ଜୀବ ପରମାତ୍ମା ସେହି ପରି ଏକ
ଅଭିନ୍ନ ପ୍ରକୃତି ବଶ ।୧୫୩।

ତଥୈବ ଜ୍ଞାନବାନ୍ ଜୀବଃ ପରମାତ୍ମନି ସର୍ବଦା ।
ଐକ୍ୟେନ ରମତେ ଜ୍ଞାନୀ ଯତ୍ର କୁତ୍ର ଦିବାନିଶମ ॥୧୫୪ ॥

ଏହି ପ୍ରକାର ଜ୍ଞାନୀ ସଦା ସର୍ବଦା ପରମାତ୍ମାଙ୍କ ସହିତ ଅଭିନ୍ନ ହୋଇ ଦିନ-ରାତି ଆନନ୍ଦ-ବିଭୋର ହୋଇ ସର୍ବତ୍ର ବିଚରଣ କରୁଥାନ୍ତି ॥୧୫୪ ॥

ଏ ପ୍ରକାର ଜ୍ଞାନୀ ପରମାତ୍ମା ସହ
ନିଜକୁ ଅଭିନ୍ନ କରି,
ଆତ୍ମାନନ୍ଦେ ଯେଣେ ଚାହେଁ ବିଚରଇ
ତେଣେ ଦିବସ ସର୍ବରୀ ।୧୫୪ ।

ଗୁରୁସନ୍ତୋଷଣାଦେବ ମୁକ୍ତୋ ଭବତି ପାର୍ବତି ।
ଅଣିମାଦିଷୁ ଭୋକ୍ତୃତ୍ୱଂ କୃପୟା ଦେବି ଜାୟତେ ॥୧୫୫ ॥

ହେ ପାର୍ବତୀ ! ଗୁରୁଦେବଙ୍କୁ ସନ୍ତୁଷ୍ଟ କରିବା ଦ୍ୱାରା ଶିଷ୍ୟ ମୁକ୍ତ ହୋଇ ଥାଏ । ହେ ଦେବୀ ! ଗୁରୁଦେବଙ୍କ କୃପାରୁ ସେ ଅଣିମାଦି ସିଦ୍ଧି ମାନ ପ୍ରାପ୍ତ ହୋଇଥାଏ ॥୧୫୫ ॥

ହେ ପାର୍ବତୀ ! ଗୁରୁ ଦେବଙ୍କୁ ସନ୍ତୁଷ୍ଟ
କରି ଶିଷ୍ୟ ଲଭେ ମୁକ୍ତି,
ଗୁରୁଦେବ କୃପା ଫଳେ ହୁଏ ଶିଷ୍ୟେ
ଅଣିମାଦି ସିଦ୍ଧି ପ୍ରାପ୍ତି ।୧୫୫ ।

ସାମ୍ୟେନ ରମତେ ଜ୍ଞାନୀ ଦିବା ବା ଯଦି ବା ନିଶି ।
ଏବଂ ବିଧୋ ମହାମୌନୀ ତ୍ରୈଲୋକ୍ୟସମତାଂ ବ୍ରଜେତ୍ ॥୧୫୬ ॥

ଜ୍ଞାନୀ ଦିବା-ରାତ୍ର, ସଦା ସର୍ବଦା ସମତା ରକ୍ଷା କରିଥାନ୍ତି । ସେହି ପ୍ରକାର ମହାମୌନୀ ଅର୍ଥାତ୍ ମହାତ୍ମା ତିନିଲୋକରେ ସମଭାବରେ ବିଚରଣ କରିଥାନ୍ତି ।।୧୫୬ ।।

ଦିବାରାତ୍ର ସଦା ସର୍ବଦା ସମତା
ରକ୍ଷାକରିଥାନ୍ତି ଜ୍ଞାନୀ,
ତିନିଲୋକେ ସମ ଭାବେ ବିଚରନ୍ତି
ସେ ମହାତ୍ମା ମହାମୌନୀ ।୧୫୬ ।

ଗୁରୁଭାବଃ ପରଂ ତୀର୍ଥମନ୍ୟତୀର୍ଥଂ ନିରର୍ଥକମ୍ ।
ସର୍ବତୀର୍ଥମୟଂ ଦେବି ଶ୍ରୀଗୁରୋଶ୍ଚରଣାମ୍ବୁଜମ ।।୧୫୭ ।।

ଗୁରୁଭକ୍ତି ସବୁଠାରୁ ବଡ଼ ତୀର୍ଥ, ଅନ୍ୟ ତୀର୍ଥ ନିରର୍ଥକ । ହେ ଦେବୀ ! ଗୁରୁଦେବଙ୍କ ଚରଣକମଳ ସର୍ବତୀର୍ଥର ସମାହାର ।।୧୫୭ ।।

ଗୁରୁଭକ୍ତି ସବୁ ଠାରୁ ବଡ଼ ତୀର୍ଥ
ନିରର୍ଥକ ଅନ୍ୟତୀର୍ଥ,
ହେ ଦେବୀ ! ଗୁରୁଙ୍କ ଚରଣ କମଳେ
ଏକତ୍ରିତ ସର୍ବତୀର୍ଥ ।୧୫୭ ।

କନ୍ୟାଭୋଗରତାମନ୍ଦାଃ ସ୍ୱକାନ୍ତାୟାଃ ପରାଙ୍ମୁଖାଃ ।
ଅତଃ ପରଂ ମୟା ଦେବି କଥିତନ୍ନ ମମ ପ୍ରିୟେ ।।୧୫୮ ।।

ହେ ଦେବୀ ! ହେ ପ୍ରିୟେ ! ନାରୀଭୋଗରେ ରତ, ନିଜ ସ୍ତ୍ରୀ, ପୁତ୍ର ବିମୁଖ (ପରନାରୀ ଗମନକାରୀ) ଥିବା ବୁଦ୍ଧିଶୂନ୍ୟ ଲୋକମାନଙ୍କୁ ମୋର ଏହି ଆତ୍ମପ୍ରିୟପରମଜ୍ଞାନ ମୁଁ କହୁ ନାହିଁ ।।୧୫୮ ।।

ହେ ଦେବୀ ! ସ୍ତ୍ରୀକନ୍ୟା ବିମୁଖ କାମିନୀ
ଭୋଗେ ରତ ଯେଉଁ ଜନ,
ବୁଦ୍ଧିଶୂନ୍ୟ ସେହି ମୂର୍ଖଙ୍କ ଉଦ୍ଦେଶ୍ୟେ

କହୁନାହିଁ ଏହି ଜ୍ଞାନ ।୧୫୮ ।

ଅଭକ୍ତେ ବଂଚକେ ଧୂର୍ତ୍ତେ ପାଖଣ୍ଡେ ନାସ୍ତିକାଦିଷୁ ।
ମନସାଽପି ନ ବକ୍ତବ୍ୟା ଗୁରୁଗୀତା କଦାଚନ ।।୧୫୯ ।।

ଅଭକ୍ତ, କପଟୀ, ଧୂର୍ତ୍ତ, ପାଖଣ୍ଡି, ନାସ୍ତିକ ଇତ୍ୟାଦିଙ୍କୁ ଏହି ଗୁରୁଗୀତା କହିବାକୁ ମନରେ ଭାବିବା ମଧ୍ୟ ଉଚିତ ନୁହେଁ ।।୧୫୯ ।।

ଅଭକ୍ତ କପଟୀ ପାଖଣ୍ଡି ନାସ୍ତିକ
ଧୂର୍ତ୍ତ ଆଦିଙ୍କୁ ସପନେ,
ଦିବ୍ୟ ଗୁରୁଗୀତା କହିବା ନିମନ୍ତେ
ଚିନ୍ତିବନି କେବେ ମନେ ।୧୫୯ ।

ଗୁରବୋ ବହବଃ ସନ୍ତି ଶିଷ୍ୟବିତ୍ତାପହାରକାଃ ।
ତମେକଂ ଦୁର୍ଲଭଂ ମନ୍ୟେ ଶିଷ୍ୟହୃତ୍ତାପହାରକମ୍ ।।୧୬୦ ।।

ଶିଷ୍ୟର ଧନ ହରଣ କରୁଥିବା ଗୁରୁ ବହୁତ ମିଳିବେ କିନ୍ତୁ ଶିଷ୍ୟ ହୃଦୟର ସଂତାପ ହରଣକାରୀ ଗୁରୁ ମିଳିବା ଦୁର୍ଲଭ, ଏହା ମୁଁ ସ୍ୱୀକାର କରୁଛି ।।୧୬୦ ।।

ଶିଷ୍ୟ ବିତ୍ତ ହାରୀ ଗୁରୁ ସଂସାରରେ
ସର୍ବତ୍ର ଅତି ସୁଲଭ,
କିନ୍ତୁ ଶିଷ୍ୟ ହୃଦ ସନ୍ତାପ ହାରକ
ଗୁରୁ ବାସ୍ତବେ ଦୁର୍ଲଭ ।୧୬୦ ।

ଚାତୁର୍ଯ୍ୟବାନ୍ ବିବେକୀ ଚ ଅଧ୍ୟାତ୍ମଜ୍ଞାନବାନ୍ ଶୁଚିଃ ।
ମାନସଂ ନିର୍ମଳଂ ଯସ୍ୟ ଗୁରୁତ୍ୱଂ ତସ୍ୟ ଶୋଭତେ ।।୧୬୧ ।।

ଯିଏ ଚତୁର, ବିବେକୀ, ଅଧ୍ୟାତ୍ମଜ୍ଞାନବାନ, ପବିତ୍ର ତଥା ନିର୍ମଳ ମନୋବୃତ୍ତିର ଅଟନ୍ତି ତାଙ୍କଠାରେ ଗୁରୁତ୍ୱ ଶୋଭା ପାଇଥାଏ ।।୧୬୧ ।।

ଯେ ଗୁରୁ ବିବେକୀ ପବିତ୍ର ଯା' ହୃଦ
ଯେ ଅଧ୍ୟାତ୍ମଜ୍ଞାନବାନ,

ମନ ଯା' ନିର୍ମଳ ଶୋଭା ପାଇଥାଏ

ତାଙ୍କ ଠାରେ ଗୁରୁପଣ ।୧୬୧ ।

ଗୁରବୋ ନିର୍ମଳାଃ ଶାନ୍ତାଃ ସାଧବୋ ମିତଭାଷିଣଃ ।
କାମକ୍ରୋଧବିନିର୍ମୁକ୍ତାଃ ସଦାଚାରା ଜିତେନ୍ଦ୍ରିୟାଃ ॥୧୬୨ ॥

ଗୁରୁ ନିର୍ମଳ, ଶାନ୍ତ, ସାଧୁ ସ୍ୱଭାବ, ମିତଭାଷୀ, କାମ-କ୍ରୋଧ ତ୍ୟାଗୀ, ସଦାଚାରୀ ଏବଂ ଇନ୍ଦ୍ରିୟ ସଂଯମୀ ହୋଇଥାନ୍ତି ॥୧୬୨ ॥

ଗୁରୁ ସ୍ୱଭାବରେ ନିରିମଳ ସାଧୁ

ହୋଇଥାନ୍ତି ଶାନ୍ତ ଶିଷ୍ଟ,

କାମ କ୍ରୋଧତ୍ୟାଗୀ ଇନ୍ଦ୍ରିୟ ସଂଯମୀ

ସଦାଚାରୀ ଅଣରୁଷ୍ଟ ।୧୬୩ ।

ସୂଚକାଦି ପ୍ରଭେଦେନ ଗୁରବୋ ବହୁଧା ସ୍ମୃତାଃ ।
ସ୍ୱୟଂ ସମ୍ୟକ୍ ପରୀକ୍ଷ୍ୟାର୍ଥ ତତ୍ତ୍ୱନିଷ୍ଠଂ ଭଜେତ୍ସୁଧୀଃ ॥୧୬୩ ॥

ସୂଚକ ଆଦି ଅନେକ ପ୍ରକାରର ଗୁରୁଙ୍କ ବିଷୟରେ କୁହାଯାଇଛି, ବୁଦ୍ଧିମାନ ମଣିଷ ସ୍ୱୟଂ ଯୋଗ୍ୟ ବିଚାର କରି ତତ୍ତ୍ୱନିଷ୍ଠ ସଦ୍‌ଗୁରୁଙ୍କର ଶରଣ ନେବା ଉଚିତ ॥୧୬୩ ॥

ସୂଚକାଦି ଭେଦେ ବହୁଧା ସ୍ମୃତିରେ

ବର୍ଣ୍ଣିତ ଗୁରୁଙ୍କ ଶ୍ରେଣୀ,

ବୁଦ୍ଧିମାନ ଯୋଗ୍ୟ ଅଯୋଗ୍ୟ ବିଚାରି

ବରିବ ସଦ୍ଗୁରୁ ଜାଣି ।୧୬୩ ।

ବର୍ଣ୍ଣଜାଲମିଦଂ ତଦ୍ୱଦ୍‌ବାହ୍ୟଶାସ୍ତ୍ରଂ ତୁ ଲୌକିକମ୍ ।
ଯସ୍ମିନ୍ ଦେବି ସମଭ୍ୟସ୍ତଂ ସ ଗୁରୁଃ ସୂଚକଃ ସ୍ମୃତଃ ॥୧୬୪ ॥

ହେ ଦେବୀ ! ବର୍ଣ୍ଣ ଏବଂ ଅକ୍ଷରମାନଙ୍କରେ ସିଦ୍ଧିପ୍ରାପ୍ତି କରି ବାହ୍ୟ ଲୌକିକ ଶାସ୍ତ୍ରକୁ ଅଭ୍ୟାସ କରିଥିବା ଗୁରୁଙ୍କୁ "ସୂଚକ ଗୁରୁ" କୁହାଯାଏ ॥୧୬୪ ॥

ହେ ଦେବୀ ! ଅକ୍ଷର ବର୍ଣ୍ଣେ ସିଦ୍ଧି ପ୍ରାପ୍ତ
ଲୌକିକ ଶାସ୍ତ୍ର ଅଭ୍ୟାସ
କରିଥିବା ଗୁରୁ 'ସୂଚକ' ବୋଲାନ୍ତି
ସଂଶୟ ନ କର ଲେଶ ।୧୬୪ ।

ବର୍ଣ୍ଣାଶ୍ରମୋଚିତାଂ ବିଦ୍ୟାଂ ଧର୍ମାଧର୍ମବିଧାୟିନୀମ ।
ପ୍ରବକ୍ତାରଂ ଗୁରୁଂ ବିଦ୍ଧି ବାଚକସ୍ତ୍ୱିତି ପାର୍ବତୀ ।।୧୬୫ ।।

ହେ ପାର୍ବତୀ ! ଧର୍ମାଧର୍ମର ନିୟମ ତିଆରି କରୁଥିବା, ବର୍ଣ୍ଣ ଏବଂ ଆଶ୍ରମକୁ ସୁହାଉଥିବା ବିଦ୍ୟାର ପ୍ରବଚନ ଦେଉଥିବା ଗୁରୁଙ୍କୁ ତୁମେ "ବାଚକ ଗୁରୁ' ବୋଲି ଜାଣ ।।୧୬୫ ।।

ଧର୍ମାଧର୍ମ ନୀତି ନିୟମ ନିର୍ମାଣି
ବର୍ଣ୍ଣାଶ୍ରମେ ଉପଯୁକ୍ତ,
ବିଦ୍ୟା ପ୍ରବଚନ ଦେଉଥିବା ଗୁରୁ
'ବାଚକ' ରୂପରେ ଖ୍ୟାତ ।୧୬୫ ।

ପଞ୍ଚାକ୍ଷର୍ଯାଦି ମନ୍ତ୍ରଣାମୁପଦେଷ୍ଟା ତୁ ପାର୍ବତୀ ।
ସ ଗୁରୁର୍ବୋଧକୋ ଭୂୟାଦୁଭୟୋରୟମୁତ୍ତମଃ ।।୧୬୬ ।।

ପଞ୍ଚାକ୍ଷରଆଦି ମନ୍ତ୍ରର ଉପଦେଶ ଦେଉଥିବା ଗୁରୁଙ୍କୁ "ବୋଧକ ଗୁରୁ" କୁହାଯାଏ । ହେ ପାର୍ବତୀ ! ପ୍ରଥମ ଦୁଇ ପ୍ରକାର ଗୁରୁଙ୍କଠାରୁ ଏହି ଗୁରୁ ଉତ୍ତମ ।।୧୬୬ ।।

ପଞ୍ଚାକ୍ଷରଆଦି ମନ୍ତ୍ର ଉପଦେଶ
ଯେଉଁ ଗୁରୁ ଦେଇଥାନ୍ତି,
'ବୋଧକ ଗୁରୁ' ସେ ଅନ୍ୟ ଦୁଇ ଗୁରୁ
ଠାରୁ ଉତ୍ତମ ବୋଲାନ୍ତି ।୧୬୬ ।

ମୋହମାରଣବଶ୍ୟାଦି ତୁଚ୍ଛମନ୍ତ୍ରୋପଦର୍ଶିନମ୍ ।
ନିଷିଦ୍ଧଗୁରୁରିତ୍ୟାହୁଃ ପଣ୍ଡିତାସ୍ତତ୍ତ୍ୱଦର୍ଶିନଃ ।।୧୬୭ ।।

ମୋହନ, ମାରଣ, ବଶୀକରଣ ଆଦି ତୁଚ୍ଛ ମନ୍ତ୍ର ବତାଉଥିବା ଗୁରୁଙ୍କୁ ତତ୍ତ୍ୱଦର୍ଶୀ ପଣ୍ଡିତମାନେ "ନିଷିଦ୍ଧ ଗୁରୁ" ବୋଲି କହନ୍ତି ।।୧୬୭ ।।

ମୋହନ ମାରଣ ବଶୀକରଣାଦି
ତୁଚ୍ଛ ମନ୍ତ୍ର ଯେ ବତାନ୍ତି,
ସେ ଗୁରୁଙ୍କୁ ତତ୍ତ୍ୱ ଦର୍ଶୀ ଜ୍ଞାନୀଗଣ
'ନିଷିଦ୍ଧ ଗୁରୁ' କୁହନ୍ତି ।୧୬୭ ।

ଅନିତ୍ୟମିତି ନିର୍ଦିଶ୍ୟ ସଂସାରଂ ସଂକଟାଳୟମ୍ ।
ବୈରାଗ୍ୟପଥଦର୍ଶୀ ଯଃ ସ ଗୁରୁର୍ବିହିତଃ ପ୍ରିୟେ ।।୧୬୮ ।।

ହେ ପ୍ରିୟେ ! "ସଂସାର ଅନିତ୍ୟ ଏବଂ ଦୁଃଖର ଘର" ଏହା ଉପଲବ୍ଧି କରି ଯେଉଁ ଗୁରୁ ବୈରାଗ୍ୟ ମାର୍ଗ ଦର୍ଶାଇଥାନ୍ତି ତାଙ୍କୁ "ବିହିତ ଗୁରୁ" କୁହାଯାଏ ।।୧୬୮ ।।

ହେ ପ୍ରିୟେ ! ସଂସାର ଅନିତ୍ୟ ଦୁଃଖର
ଘର କରି ଉପଲବ୍ଧି,
ବୈରାଗ୍ୟ ମାର୍ଗ ଯେ ଦେଖାନ୍ତି 'ବିହିତ
ଗୁରୁ' ନାମେ ତାଙ୍କ ସିଦ୍ଧି ।୧୬୮ ।

ତତ୍ତ୍ୱମସ୍ୟାଦି ବାକ୍ୟାନାମୁପଦେଷ୍ଟା ତୁ ପାର୍ବତୀ ।
କାରଣାଖ୍ୟୋ ଗୁରୁଃ ପ୍ରୋକ୍ତୋ ଭବରୋଗନିବାରକଃ ।।୧୬୯ ।।

ହେ ପାର୍ବତୀ ! "ତତ୍ତ୍ୱମସି" ଆଦି ମହାବାକ୍ୟମାନଙ୍କର ଉପଦେଶ ଦେଉଥିବା ତଥା ସଂସାରରୂପୀ ରୋଗର ନିବାରଣ କରିପାରୁଥିବା ଗୁରୁଙ୍କୁ "କାରଣାଖ୍ୟ ଗୁରୁ" କୁହାଯାଏ ।।୧୬୯ ।।

ତତ୍ତ୍ୱମସି ଆଦି ମହାବାକ୍ୟଙ୍କର
ଉପଦେଶ ଯିଏ ଦିଏ,
ଭବରୋଗ ନାଶ କରଣେ ସମର୍ଥ
'କାରଣାଖ୍ୟ ଗୁରୁ' ସିଏ ।୧୬୯ ।

ସର୍ବସନ୍ଦେହସନ୍ଦୋହ ନିର୍ମୁଳନ ବିଚକ୍ଷଣଃ ।
ଜନ୍ମମୃତ୍ୟୁଭୟଘ୍ନୋ ଯଃ ସ ଗୁରୁଃ ପରମୋ ମତଃ ।।୧୭୦ ।।

ସବୁ ପ୍ରକାର ସନ୍ଦେହକୁ ମୂଳରୁ ନାଶ କରିବାରେ ଯେଉଁ ଗୁରୁ ବିଚକ୍ଷଣ ଅଟନ୍ତି, ଜନ୍ମ, ମୃତ୍ୟୁ ତଥା ଭୟକୁ ଯିଏ ବିନାଶ କରିପାରନ୍ତି ସେ ହିଁ "ପରମ ଗୁରୁ" ।।୧୭୦ ।।

ସବୁ ସନ୍ଦେହକୁ ବିଚକ୍ଷଣ ଗୁରୁ
ମୂଳୁ ନାଶ କରେ ଯିଏ,
ଜନ୍ମ ମୃତ୍ୟୁ ଭୟ ନାଶ କାରକ ସେ
'ପରମ ଗୁରୁ' ବୋଲାଏ ।୧୭୦ ।

ବହୁଜନ୍ମକୃତାତ୍ ପୁଣ୍ୟାଲ୍ଲଭ୍ୟତେଽସୌ ମହାଗୁରୁଃ !
ଲବ୍‌ଧ୍ୱାଽମୁଂ ନ ପୁନର୍ଯାତି ଶିଷ୍ୟଃ ସଂସାର ବନ୍ଧନମ୍ ।।୧୭୧ ।।

ଅନେକ ଜନ୍ମର ପୁଣ୍ୟ ଦ୍ୱାରା ଏପରି ମହାଗୁରୁ ପ୍ରାପ୍ତ ହୋଇଥାନ୍ତି । ତାଙ୍କୁ ପ୍ରାପ୍ତ କରି ଶିଷ୍ୟ ପୁନର୍ବାର ସଂସାର ବନ୍ଧନରେ ବାନ୍ଧି ହୁଏ ନାହିଁ ଅର୍ଥାତ୍ ସେ ଭବବନ୍ଧରୁ ମୁକ୍ତ ହୋଇଯାଏ ।।୧୭୧ ।।

ବହୁ ଜନ୍ମ ପୁଣ୍ୟ ଫଳେ ଏହିପରି
ଗୁରୁ ପ୍ରାପ୍ତ ହୋଇ ଥା'ନ୍ତି,
ପାଇ ଯା'ରେ ଶିଷ୍ୟେ ସଂସାର ବନ୍ଧନୁ
ମୁକତ ହୋଇ ଯାଆନ୍ତି ।୧୭୧ ।

ଏବଂ ବହୁବିଧାଲୋକେ ଗୁରବଃ ସନ୍ତି ପାର୍ବତୀ ।
ତେଷୁ ସର୍ବପ୍ରଯତ୍ନେନ ସେବ୍ୟୋ ହି ପରମୋ ଗୁରୁଃ ।।୧୭୨ ।।

ହେ ପାର୍ବତୀ ! ଏହି ପ୍ରକାର ସଂସାରରେ ଅନେକ ପ୍ରକାର ଗୁରୁ ଅଛନ୍ତି । ଏହି ସବୁ ଗୁରୁଙ୍କ ମଧ୍ୟରେ କେବଳ ପରମ ଗୁରୁଙ୍କ ସାନ୍ନିଧ୍ୟ ପ୍ରାପ୍ତ କରିବା ପାଇଁ ସମସ୍ତ ପ୍ରକାର ପ୍ରଯତ୍ନ କରିବା ଉଚିତ ।।୧୭୨ ।।

ହେ ପାର୍ବତୀ ! ଗୁରୁ ଏ ପ୍ରାୟ ସଂସାରେ
ଛନ୍ତି ବିଭିନ୍ନ ପ୍ରକାର,

ତା' ମଧ୍ୟୁ 'ପରମ          ଗୁରୁ' ପ୍ରାପ୍ତି ପାଇଁ
ସର୍ବଦା ପ୍ରଯତ୍ନ କର ।୧୭୨ ।

**ପାର୍ବତ୍ୟୁବାଚ**

ସ୍ୱୟଂ ମୁଢ଼ା ମୃତ୍ୟୁଭୀତାଃ ସୁକୃତାଦ୍ୱିରତିଂ ଗତାଃ ।
ଦୈବାନ୍ନିଷିଦ୍ଧଗୁରୁଗା ଯଦି ତେଷାଂ ତୁ କା ଗତିଃ ।।୧୭୩ ।।

ପାର୍ବତୀ କହିଲେ: "ପ୍ରକୃତି ସମ୍ବନ୍ଧରେ ଅଜ୍ଞ, ମୃତ୍ୟୁକୁ ଭୟ କରୁଥିବା, ସତ୍‌କର୍ମ ବିମୁଖ ମନୁଷ୍ୟ ଦୈବଯୋଗରୁ ଯଦି ନିଷିଦ୍ଧ ଗୁରୁଙ୍କୁ ପ୍ରାପ୍ତ କରେ ତେବେ ତା'ର ଦଶା କ'ଣ ହେବ ?" ।।୧୭୩ ।।

ପାର୍ବତୀ ବୋଲନ୍ତି          ସତ୍କର୍ମ ବିମୁଖ
ମୁଢ଼ ମୃତ୍ୟୁ ଭୟେ ଭୀତ,
କି ଦଶା ଭୋଗିବ          ନିଷିଦ୍ଧ ଗୁରୁଙ୍କୁ
ଦୈବଯୋଗେ କଲେ ପ୍ରାପ୍ତ ।୧୭୩ ।

**ଶ୍ରୀ ମହାଦେବ ଉବାଚ**

ନିଷିଦ୍ଧଗୁରୁଶିଷ୍ୟସ୍ତୁ ଦୁଷ୍ଟସଂକଳ୍ପଦୂଷିତଃ ।
ବ୍ରହ୍ମପ୍ରଳୟପର୍ଯ୍ୟନ୍ତଂ ନ ପୁନର୍ଯାତି ମର୍ତ୍ତ୍ୟତାମ୍ ।।୧୭୪ ।।

ଶ୍ରୀ ମହାଦେବ କହିଲେ : ନିଷିଦ୍ଧ ଗୁରୁଙ୍କର ଶିଷ୍ୟ ଦୁଷ୍ଟ ସଂକଳ୍ପ ମାନଙ୍କ ଦ୍ୱାରା ଦୂଷିତ ହୋଇଥିବା କାରଣରୁ ବ୍ରହ୍ମପ୍ରଳୟ ପର୍ଯ୍ୟନ୍ତ ମନୁଷ୍ୟ ଜନ୍ମ ପାଇ ନ ଥାଏ, ପଶୁଯୋନିରେ ହିଁ ଘୂରିବୁଲେ ।।୧୭୪ ।।

ଶଙ୍କର ବୋଲନ୍ତି          ନିଷିଦ୍ଧ ଗୁରୁର
ଦୁଷ୍ଟ ସଂକଳ୍ପେ ଦୁଷିତ,
କାରଣରୁ ଶିଷ୍ୟ          ପଶୁ ଯୋନି ପାଏ
ବ୍ରହ୍ମ ପ୍ରଳୟ ପର୍ଯ୍ୟନ୍ତ ।୧୭୪ ।

ଶୃଣୁ ତତ୍ତ୍ୱମିଦଂ ଦେବି ଯଦା ସ୍ୟାଦ୍ୱିରତୋ ନରଃ ।

ତଦାଽସାବଧିକାରୀତି ପ୍ରୋଚ୍ୟତେ ଶ୍ରୁତମସ୍ତକୈଃ ||୧୭୫ ||

ହେ ଦେବୀ! ଏହି ତତ୍ତ୍ୱକୁ ଶୁଣ । ଉପନିଷଦ ଅନୁସାରେ ମନୁଷ୍ୟର ଯେତେବେଳେ ଭୋଗବିଳାସ ପ୍ରତି ବିରକ୍ତିଭାବ ଆସେ ସେତେବେଳେ ତାକୁ ଅଧିକାରୀ କୁହାଯାଏ । ଅର୍ଥାତ୍ ଦୈବଯୋଗ ଦ୍ୱାରା ଗୁରୁପ୍ରାପ୍ତ ହେବା ଗୋଟିଏ କଥା ଏବଂ ବୁଦ୍ଧି ଦ୍ୱାରା ନିର୍ଣ୍ଣୟ କରିବା ଅନ୍ୟ ଗୋଟିଏ କଥା ||୧୭୫ ||

ହେ ଦେବୀ! ଶୁଣ ଏ　　ତତ୍ତ୍ୱ ଏକ କଥା
ଭାଗ୍ୟରୁ ଗୁରୁ ମିଳିବା,
ତହିଁରୁ ଭିନ୍ନ ଏ　　ବୁଦ୍ଧି ସାହାଯ୍ୟରେ
ଗୁରୁ ନିର୍ଣ୍ଣୟ କରିବା ।୧୭୫ ।

ଅଖଣ୍ଡୈକରସଂ ବ୍ରହ୍ମ ନିତ୍ୟମୁକ୍ତଂ ନିରାମୟମ୍ ।
ସ୍ୱସ୍ମିନ ସନ୍ଦର୍ଶିତଂ ଯେନ ସ ଭବେଦସ୍ୟ ଦେଶିକଃ ||୧୭୬ ||

ଅଖଣ୍ଡ, ଏକରସ, ନିତ୍ୟମୁକ୍ତ ଏବଂ ନିରାମୟ ବ୍ରହ୍ମକୁ ନିଜ ଭିତରେ ଯିଏ ଦର୍ଶନ କରାଇ ପାରନ୍ତି ସେ ହିଁ ଗୁରୁ ପଦବାଚ୍ୟ ||୧୭୬ ||

ଏକରସ ନିତ୍ୟ　　ମୁକ୍ତ ନିରାମୟ
ଅଖଣ୍ଡ ବ୍ରହ୍ମ ଦର୍ଶନ,
ନିଜ ଭିତରେ ଯେ　　କରାଇ ପାରନ୍ତି
ଯୋଗ୍ୟ ଗୁରୁ ସେ ମହାନ ।୧୭୬ ।

ଜଳାନାଂ ସାଗରୋ ରାଜା ଯଥା ଭବତି ପାର୍ବତୀ ।
ଗୁରୁଣାଂ ତତ୍ର ସର୍ବେଷାଂ ରାଜାୟଂ ପରମୋ ଗୁରୁଃ ||୧୭୭ ||

ହେ ପାର୍ବତୀ! ଯେପରି ସମସ୍ତ ଜଳାଶୟମାନଙ୍କର ରାଜା ସମୁଦ୍ର ସେହିପରି ଗୁରୁମାନଙ୍କ ମଧ୍ୟରେ ରାଜା ହେଉଛନ୍ତି "ପରମଗୁରୁ' ||୧୭୭ ||

ହେ ପାର୍ବତୀ! ରାଜା　　ଜଳାଶୟ ମଧ୍ୟେ
ସିନ୍ଧୁକୁ ଲୋକେ କହନ୍ତି,

ଗୁରୁଙ୍କ ମଧ୍ୟରେ ରାଜା ସେହିପରି

ପରମ ଗୁରୁ ବୋଲାନ୍ତି ।୧୭୭ ।

ମୋହାଦିରହିତଃ ଶାନ୍ତୋ ନିତ୍ୟତୃପ୍ତୋ ନିରାଶ୍ରୟଃ ।

ତୃଣୀକୃତବ୍ରହ୍ମବିଷ୍ଣୁବୈଭବଃ ପରମୋ ଗୁରୁଃ ।।୧୭୮ ।।

ମୋହ ଆଦି ଦୋଷର ଉର୍ଦ୍ଧ୍ୱରେ ରହି, ଶାନ୍ତ, ନିତ୍ୟତୃପ୍ତ, ଆତ୍ମନିର୍ଭରଶୀଳ, ବ୍ରହ୍ମା, ବିଷ୍ଣୁଙ୍କର ବୈଭବକୁ ମଧ୍ୟ ତୃଣବତ୍ ଭାବୁଥିବା ଗୁରୁ ହିଁ "ପରମ ଗୁରୁ" ।।୧୭୮ ।।

ମୋହାଦିରହିତ ଶାନ୍ତ ନିତ୍ୟତୃପ୍ତ

ନିରାଶ୍ରୟ ତୃଣ ବତ,

ବ୍ରହ୍ମା ବିଷ୍ଣୁ ବଇ- ଭବେ ଯେ ମଣେ ସେ

'ପରମ ଗୁରୁ' ସାକ୍ଷାତ ।୧୭୮ ।

ସର୍ବକାଳବିଦେଶେଷୁ ସ୍ୱତନ୍ତ୍ରୋ ନିଶ୍ଚଳସ୍ସୁଖୀ ।

ଅଖଣ୍ଡୈକରସାସ୍ୱାଦତୃପ୍ତୋ ହିଁ ପରମୋ ଗୁରୁଃ ।।୧୭୯ ।।

ଯିଏ ସବୁ ସମୟ ଏବଂ ସବୁ ଦେଶରେ ସ୍ୱତନ୍ତ୍ର, ନିଶ୍ଚଳ, ସୁଖୀ, ଅଖଣ୍ଡ, ଏକରସର ଆନନ୍ଦରେ ତୃପ୍ତ ସେ ହିଁ ବାସ୍ତବରେ "ପରମ ଗୁରୁ" ।।୧୭୯ ।।

ସବୁ ସମୟରେ ସବୁ ଦେଶରେ ଯେ

ନିଶ୍ଚଳ ସୁଖୀ ସ୍ୱତନ୍ତ୍ର,

ଅଖଣ୍ଡୈକରସ ସ୍ୱାଦ ତୃପ୍ତ ସେହି

ପରମ ଗୁରୁ ପ୍ରକୃତ ।୧୭୯ ।

ଦ୍ୱୈତାଦ୍ୱୈତବିନିର୍ମୁକ୍ତଃ ସ୍ୱାନୁଭୂତି ପ୍ରକାଶବାନ୍ ।

ଅଜ୍ଞାନାନ୍ଧତମଶ୍ଛେତ୍ତା ସର୍ବଜ୍ଞଃ ପରମୋ ଗୁରୁଃ ।।୧୮୦ ।।

ଦ୍ୱୈତ ଏବଂ ଅଦ୍ୱୈତ ସମ୍ବନ୍ଧରେ ମୁକ୍ତ, ଆତ୍ମାନୁଭବର ପ୍ରକାଶକ, ଅଜ୍ଞାନରୂପୀ ଅନ୍ଧକାରରୁ ଆଲୋକ ଅଭିମୁଖେ ନେଉଥିବା ଏବଂ ସର୍ବଜ୍ଞାନର ଅଧିକାରୀ ହିଁ 'ପରମ ଗୁରୁ' ॥୧୮୦॥

ଦ୍ୱୈତାଦ୍ୱୈତ ମୁକ୍ତ ଆତ୍ମାନୁଭବର
ପ୍ରକାଶକ ଯେଉଁ ଗୁରୁ,
ଅଜ୍ଞାନାନ୍ଧତମ ଛେଦକ ସର୍ବଜ୍ଞ
ଗୁରୁ ହିଁ ପରମ ଗୁରୁ ।୧୮୦।

ଯସ୍ୟ ଦର୍ଶନ ମାତ୍ରେଣ ମନସଃ ସ୍ୟାତ୍ ପ୍ରସନ୍ନତା ।
ସ୍ୱୟଂ ଭୂୟାତ୍ ଧୃତିଶ୍ଶାନ୍ତିଃ ସ ଭବେତ୍ ପରମୋ ଗୁରୁଃ ॥୧୮୧॥

ଯାହାଙ୍କୁ ଦର୍ଶନ କରିବା ମାତ୍ରେ ମନ ପ୍ରସନ୍ନ ହୋଇଥାଏ । ସ୍ୱତଃ ଧୈର୍ଯ୍ୟ ଏବଂ ଶାନ୍ତି ଆସେ ସେ ହିଁ "ପରମ ଗୁରୁ" ॥୧୮୧॥

ଧୈର୍ଯ୍ୟ ଶାନ୍ତି ସ୍ୱତଃ ଆସିଥାଏ ହୃଦେ
ଯାହାର କଲେ ଦର୍ଶନ,
ପରମ ଗୁରୁ ସେ ଦେଖୁ ଦେଖୁ ଯା'ରେ
ମନ ହୁଅଇ ପ୍ରସନ୍ନ ।୧୮୧।

ସ୍ୱଶରୀରଂ ଶବଂ ପଶ୍ୟନ୍ ତଥା ସ୍ୱାତ୍ମାନମଦ୍ୱୟମ୍ ।
ଯଃ ସ୍ତ୍ରୀକନକମୋହଘ୍ନଃ ସ ଭବେତ୍ ପରମୋ ଗୁରୁଃ ॥୧୮୨॥

ଯିଏ ନିଜ ଶରୀରକୁ ଶବବତ୍ ଭାବିଥାଏ, ନିଜ ଆତ୍ମାକୁ ଅଦ୍ୱୟ (ଅଦ୍ୱିତୀୟ ) ବୋଲି ଜାଣେ, ଯିଏ କାମିନୀ ଏବଂ କାଞ୍ଚନ ମୋହର ନାଶକର୍ତ୍ତା ସେ ହିଁ "ପରମ ଗୁରୁ" ॥୧୮୨॥

କାମିନୀ କାଞ୍ଚନ ମୋହ ନାଶକର୍ତ୍ତା
ଶରୀରକୁ ଶବ ପ୍ରାୟ
ପରମ ଗୁରୁ ସେ ମଣିଥାଏ ଯିଏ
ନିଜ ଆତ୍ମାକୁ ଅଦ୍ୱୟ ।୧୮୨।

ମୌନୀ ବାଗ୍ମୀତି ତତ୍ତ୍ୱଜ୍ଞୋ ଦ୍ୱିଧାଭୂଚ୍ଛୃଣୁ ପାର୍ବତୀ ।
ନ କଶ୍ଚିନ୍ମୌନିନା ଲାଭୋ ଲୋକେଽସ୍ମିନ୍‌ଭବତି ପ୍ରିୟେ ।।୧୮୩ ।।
ବାଗ୍ମୀ ତୂତ୍କଟସଂସାର ସାଗରୋତ୍ତାରଣକ୍ଷମଃ ।
ଯତୋଽସୌ ସଂଶୟଚ୍ଛେତ୍ତା ଶାସ୍ତ୍ରଯୁକ୍ତ୍ୟନୁଭୂତିଭିଃ ।।୧୮୪ ।।

ହେ ପାର୍ବତୀ ! ଶୁଣ । ତତ୍ତ୍ୱଜ୍ଞ ଦୁଇ ପ୍ରକାରର : ମୌନୀ ଏବଂ ବକ୍ତା । ହେ ପ୍ରିୟେ ! ଏମାନଙ୍କ ମଧ୍ୟରୁ ମୌନୀଗୁରୁ ଦ୍ୱାରା ଲୋକଙ୍କର କୌଣସି ଲାଭ ହୋଇନଥାଏ, କିନ୍ତୁ ବକ୍ତା ଗୁରୁ ଏହି ଭୟଙ୍କର ସଂସାର ସାଗରରୁ ପାର କରିଥାନ୍ତି । କାରଣ ଶାସ୍ତ୍ର, ଯୁକ୍ତି ଏବଂ ଅନୁଭୂତି ଦ୍ୱାରା ସେ ସମସ୍ତ ସଂଶୟର ଛେଦନ କରିଥାନ୍ତି ।।୧୮୩,୧୮୪ ।।

ହେ ପାର୍ବତୀ ଶୁଣ ମୌନୀ ବକ୍ତା ନାମେ
ତତ୍ତ୍ୱଜ୍ଞ ଦୁଇ ପ୍ରକାର,
ମୌନୀ ଗୁରୁ ଦ୍ୱାରା ଲାଭ ହୁଏ ନାହିଁ
ଏ ସଂସାରରେ କାହାର ।୧୮୩ ।
ଶାସ୍ତ୍ର ଯୁକ୍ତି ଅନୁ- ଭୂତି ସାହାଯ୍ୟରେ
ବକ୍ତା ଗୁରୁଟି ଶିଷ୍ୟର,
ସମସ୍ତ ସଂଶୟ ଛେଦି ଏହି ଭବ
ସାଗରୁ କରନ୍ତି ପାର ।୧୮୪ ।

ଗୁରୁନାମଜପାଦ୍ଦେବି ବହୁଜନ୍ମାର୍ଜିତାନ୍ୟପି ।
ପାପାନି ବିଲୟଂ ଯାନ୍ତି ନାସ୍ତି ସନ୍ଦେହମଣ୍ୱପି ।।୧୮୫ ।।

ହେ ଦେବୀ ! ଗୁରୁନାମ ଜପ ଦ୍ୱାରା ଅନେକ ଜନ୍ମର ଅର୍ଜିତ ପାପ ନଷ୍ଟ ହୋଇଯାଏ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।।୧୮୫ ।।

ହେ ଦେବୀ ! ଅନେକ ଜନ୍ମର ଅର୍ଜିତ
ପାପ ନଷ୍ଟ ହୋଇଯାଏ,

ଅଣୁମାତ୍ର ନାହିଁ ସନ୍ଦେହ ଏଥିରେ
ଗୁରୁନାମ ଜପେ ଯିଏ ।୧୮୫ ।

କୁଳଂ ଧନଂ ବଳଂ ଶାସ୍ତ୍ରଂ ବାନ୍ଧବାସ୍ତ୍ୱୋଦରା ଇମେ ।
ମରଣେ ନୋପଯୁଜ୍ୟନ୍ତେ ଗୁରୁରେକୋ ହି ତାରକଃ ।।୧୮୬ ।।

ନିଜ କୁଳ, ଧନ, ବଳ, ଶାସ୍ତ୍ର, ସମ୍ପର୍କୀୟ, ଭାଇ ଏ ସମସ୍ତ ମୃତ୍ୟୁ ସମୟରେ କୌଣସି କାର୍ଯ୍ୟରେ ଆସିବେ ନାହିଁ । ଏକମାତ୍ର ଗୁରୁଦେବ ହିଁ ସେହି ସମୟରେ ତାରଣକର୍ତ୍ତା ଅଟନ୍ତି ।।୧୮୬ ।।

କୁଳ ଧନ ବଳ ଶାସ୍ତ୍ର ଭାଇ ବନ୍ଧୁ
କେ ନଆସନ୍ତି କାର୍ଯ୍ୟରେ,
ଏକା ଗୁରୁଦେବ ତାରକ ଅଟନ୍ତି
ଜୀବ ଯିବା ସମୟରେ ।୧୮୬ ।

କୁଳମେବ ପବିତ୍ରଂ ସ୍ୟାତ୍ ସତ୍ୟଂ ସ୍ୱଗୁରୁସେବୟା ।
ତୃପ୍ତାଃ ସ୍ୟୁସ୍ସକଳା ଦେବା ବ୍ରହ୍ମାଦ୍ୟା ଗୁରୁତର୍ପଣାତ୍ ।।୧୮୭ ।।

ବାସ୍ତବରେ ନିଜ ଗୁରୁଦେବଙ୍କ ସେବା କରିବା ଦ୍ୱାରା ନିଜର କୁଳ ମଧ୍ୟ ପବିତ୍ର ହୋଇଥାଏ । ଗୁରୁଦେବଙ୍କୁ ତର୍ପଣ କରିବା ଦ୍ୱାରା ବ୍ରହ୍ମା ଆଦି ସମସ୍ତ ଦେବତା ତୃପ୍ତ ହୋଇଥାନ୍ତି ।।୧୮୭ ।।

ବାସ୍ତବରେ ଗୁରୁ ସେବା ଦ୍ୱାରା ନିଜ
କୁଳ ହୁଅଇ ପବିତ୍ର,
ଗୁରୁଙ୍କୁ ତର୍ପଣ ଅର୍ପଣ କରିଲେ
ବ୍ରହ୍ମାଦି ଦେବତା ତୃପ୍ତ ।୧୮୭ ।

ସ୍ୱରୂପଜ୍ଞାନଶୂନ୍ୟେନ କୃତମପ୍ୟକୃତଂ ଭବେତ୍ ।
ତପୋ ଜାପାଦିକଂ ଦେବି ସକଳଂ ବାଳଜଳ୍ପବତ୍ ।।୧୮୮ ।।

ହେ ଦେବୀ ! ସ୍ୱରୂପ ଜ୍ଞାନ ବିନା କରାଯାଉଥିବା ଜପ ତପାଦି ସମସ୍ତ କାର୍ଯ୍ୟ କେବଳ ଶ୍ରମମାତ୍ର, ପିଲାମାନଙ୍କର ଅର୍ଥହୀନ ଆଳାପ ସହିତ ସମାନ ।।୧୮୮ ।।

ହେ ଦେବୀ ! ସ୍ୱରୂପ ଜ୍ଞାନ ବିନା ଜପ
ତପାଦି କାର୍ଯ୍ୟ ସମସ୍ତ,
ବାଳକ ମାନଙ୍କ ଅର୍ଥହୀନାଳାପ
ସହ ସମ ଶ୍ରମ ମାତ୍ର ।୧୮୮ ।

ନ ଜାନନ୍ତି ପରଂ ତତ୍ତ୍ୱଂ ଗୁରୁଦୀକ୍ଷାପରାଙ୍‌ମୁଖାଃ ।
ଭ୍ରାନ୍ତାଃ ପଶୁସମା ହ୍ୟେ ତେ ସ୍ୱପରିଜ୍ଞାନବର୍ଜିତାଃ ।।୧୮୯ ।।

ଗୁରୁଦୀକ୍ଷା ସମ୍ବନ୍ଧରେ ବିମୁଖ ରହୁ ଥିବା ବ୍ୟକ୍ତି ଭ୍ରମଯୁକ୍ତ ଅଟନ୍ତି । ନିଜର ବାସ୍ତବିକ ଜ୍ଞାନରୁ ସେମାନେ ବଂଚିତ । ସେମାନେ ପ୍ରକୃତରେ ପଶୁ ସହିତ ସମାନ । ପରମ ତତ୍ତ୍ୱକୁ ସେମାନେ ଜାଣନ୍ତି ନାହିଁ ।।୧୮୯ ।।

ଗୁରୁ ବିମୁଖ ଯେ ପଶୁ ସହ ସମ
ନ ଜାଣେ ପରମ ତତ୍ତ୍ୱ,
ବାସ୍ତବିକଜ୍ଞାନୁ ବଂଚିତ ସେ ବ୍ୟକ୍ତି
ମନ ତା'ର ଭ୍ରମ ଯୁକ୍ତ ।୧୮୯ ।

ତସ୍ମାତ୍‌କୈବଲ୍ୟସିଦ୍ଧ୍ୟର୍ଥଂ ଗୁରୁମେବ ଭଜେତ୍‌ପ୍ରିୟେ ।
ଗୁରୁଂ ବିନା ନ ଜାନନ୍ତି ମୂଢ଼ାସ୍ତତ୍ପରମଂ ପଦମ୍ ।।୧୯୦ ।।

ଏଥିପାଇଁ ହେ ପ୍ରିୟେ ! କୈବଲ୍ୟ ସିଦ୍ଧି ପାଇଁ ଗୁରୁଙ୍କୁ ହିଁ ଭଜନ କରିବା ଉଚିତ । ଗୁରୁ ବିନା ମୂଢ଼ଲୋକ ଏହି ପରମପଦ ସମ୍ବନ୍ଧରେ କିଛି ଜାଣି ପାରନ୍ତି ନାହିଁ ।।୧୯୦ ।।

ହେ ପ୍ରିୟେ ! କୈବଲ୍ୟ ସିଦ୍ଧି ପାଇଁ ତେଣୁ
ଗୁରୁ ଭଜନ କରିବ,
ଗୁରୁ କୃପା ବିନା ପରମପଦଙ୍କ
ଜ୍ଞାନ କେବେ ନ ମିଳିବ ।୧୯୦ ।

ଭିଦ୍ୟତେ ହୃଦୟଗ୍ରନ୍ଥି ଶ୍ଛିଦ୍ୟନ୍ତେ ସର୍ବସଂଶୟାଃ ।
କ୍ଷୀୟନ୍ତେ ସର୍ବକର୍ମାଣି ଗୁରୋଃ କରୁଣୟା ଶିବେ ।।୧୯୧ ।।

ହେ ଶିବେ! ଗୁରୁଦେବଙ୍କ କୃପାରୁ ହୃଦୟର ଗ୍ରନ୍ଥି ଛିନ୍ନ ହୁଏ, ସମସ୍ତ ସଂଶୟ କଟିଯାଏ ଏବଂ ସମସ୍ତ କର୍ମ ନଷ୍ଟ ହୋଇଯାଏ ||୧୯୧ ||

ହେ ଶିବେ! ଗୁରୁଙ୍କ କୃପାରୁ ହୃଦୟ
ଗ୍ରନ୍ଥି ଛିନ୍ନ ହୋଇଯାଏ,
ସମସ୍ତ ସଂଶୟ କର୍ମାକର୍ମ ଦୋଷ
ଆପେ ଆପେ ନାଶ ହୁଏ |୧୯୧ |

କୃତାୟା ଗୁରୁଭକ୍ତେସ୍ତୁ ବେଦଶାସ୍ତ୍ରାନୁସାରତଃ |
ମୁଚ୍ୟତେ ପାତକାଦ୍ ଘୋରାଦ୍ ଗୁରୁଭକ୍ତୋ ବିଶେଷତଃ ||୧୯୨ ||

ବେଦ ଓ ଶାସ୍ତ୍ର ଅନୁସାରେ ବିଶେଷ ଭାବେ ଗୁରୁଙ୍କ ଭକ୍ତି କରିବା ଦ୍ୱାରା ଗୁରୁଭକ୍ତ ଘୋର ପାପରୁ ମୁକ୍ତି ପାଏ ||୧୯୨ ||

ଗୁରୁଙ୍କର ଭକ୍ତି କରିଥାଏ ଯିଏ
ବେଦ ଶାସ୍ତ୍ର ଅନୁସାରେ,
ମୁକ୍ତି ପାଇଯାଏ କୃତ ଘୋର ପାପୁ
ସେ ଗୁରୁ ଭକ୍ତ ଅଚୀରେ |୧୯୨ |

ଦୁଃସଂଗଂ ଚ ପରିତ୍ୟଜ୍ୟ ପାପକର୍ମ ପରିତ୍ୟଜେତ୍ |
ଚିତ୍ତଚିହ୍ନମିଦଂ ଯସ୍ୟ ତସ୍ୟ ଦୀକ୍ଷା ବିଧୀୟତେ ||୧୯୩ ||

ଦୁର୍ଜନମାନଙ୍କର ସଙ୍ଗ ତ୍ୟାଗକରି ପାପକର୍ମ ଛାଡ଼ିଦେବା ଉଚିତ | ଯାହାର ଚିତ୍ତରେ ଏପରି ଲକ୍ଷଣ ଦେଖାଯାଏ ସେ ଗୁରୁଦୀକ୍ଷାର ଅଧିକାରୀ ||୧୯୩ ||

ଦୁର୍ଜନଙ୍କ ସଙ୍ଗ ତ୍ୟାଗ କରି ପାପ
କର୍ମ ଛାଡ଼ଇ ବିଶ୍ୱାସେ,
ଉପଯୁକ୍ତ ସିଏ ଗୁରୁଦୀକ୍ଷା ପାଇଁ
ଯା' ଚିତ୍ତେ ଏ ଚିହ୍ନ ଦିଶେ |୧୯୩ |

ଚିତ୍ତତ୍ୟାଗନିଯୁକ୍ତଶ୍ଚ କ୍ରୋଧଗର୍ବବିବର୍ଜିତଃ |

ଦ୍ୱିତଭାବପରିତ୍ୟାଗୀ ତସ୍ୟ ଦୀକ୍ଷା ବିଧୀୟତେ ।।୧୯୪ ।।

ଚିତ୍ତ ତ୍ୟାଗ କରିବାରେ ଯିଏ ପ୍ରଯତ୍ନଶୀଳ, କ୍ରୋଧ ଏବଂ ଗର୍ବରୁ ଯିଏ ମୁକ୍ତ, ଦ୍ୱୈତଭାବକୁ ଯିଏ ତ୍ୟାଗ କରିଛନ୍ତି ସେ ଗୁରୁଦୀକ୍ଷାର ଅଧିକାରୀ ।।୧୯୪ ।।

ଦ୍ୱୈତ ଭାବ ତ୍ୟାଗୀ କ୍ରୋଧ ଗର୍ବୁ ମୁକ୍ତ
ଚିତ୍ତତ୍ୟାଗେ ଯତ୍ନକାରୀ,
ଭାଗ୍ୟବାନ ଶିଷ୍ୟ ଗୁରୁଙ୍କର ଦୀକ୍ଷା
ପାଇବାରେ ଅଧିକାରୀ ।୧୯୪ ।

ଏତଲ୍ଲକ୍ଷଣସଂଯୁକ୍ତଂ ସର୍ବଭୂତହିତେ ରତମ୍ ।
ନିର୍ମଳଂ ଜୀବିତଂ ଯସ୍ୟ ତସ୍ୟ ଦୀକ୍ଷା ବିଧୀୟତେ ।।୧୯୫ ।।

ଯାହାର ଜୀବନ ଏହି ଲକ୍ଷଣସମୂହରେ ଭରପୂର, ନିର୍ମଳ, ଯିଏ ସମସ୍ତ ଜୀବମାନଙ୍କର କଲ୍ୟାଣକାରୀ ସେ ଗୁରୁଦୀକ୍ଷାର ଅଧିକାରୀ ।।୧୯୫ ।।

ଏସନ ଲକ୍ଷଣ ଯୁକ୍ତ ଯା' ଜୀବନ
ସର୍ବଭୂତହିତେ ରତ,
ଗୁରୁଙ୍କଦୀକ୍ଷାର ଅଧିକାରୀ ସିଏ
ବାସ୍ତବ ଗୁରୁଙ୍କ ଭକ୍ତ ।୧୯୫ ।

ଅତ୍ୟନ୍ତଚିତ୍ତପକ୍ୱସ୍ୟ ଶ୍ରଦ୍ଧାଭକ୍ତିର୍ଯୁତସ୍ୟ ଚ ।
ପ୍ରବକ୍ତବ୍ୟମିଦଂ ଦେବି ମମାତ୍ମପ୍ରୀତୟେ ସଦା ।।୧୯୬ ।।

ହେ ଦେବୀ ! ଯାହାଙ୍କର ଚିତ୍ତ ଅତ୍ୟନ୍ତ ପରିପକ୍ୱ, ଶ୍ରଦ୍ଧା ଏବଂ ଭକ୍ତିଯୁକ୍ତ ତାଙ୍କୁ ଏହି ତତ୍ତ୍ୱ ସର୍ବଦା ମୋର ପ୍ରସନ୍ନତା ନିମନ୍ତେ କହିବା ଉଚିତ ।।୧୯୬ ।।

ହେ ଦେବୀ ! ଯାହାର ଚିତ୍ତ ପରିପକ୍ୱ
ଶ୍ରଦ୍ଧା ପୂର୍ଣ୍ଣ ଭକ୍ତି ଯୁକ୍ତ,
ଏ ଗୁରୁ ତତ୍ତ୍ୱ ମୋ ପ୍ରସନ୍ନତା ପାଇଁ

ତା'ରେ କହିବା ଉଚିତ ।୧୯୬ ।

ସତ୍ କର୍ମପରିପାକାତ୍ ଚିତ୍ତଶୁଦ୍ଧସ୍ୟ ଧୀମତଃ ।
ସାଧକସ୍ୟୈବ ବକ୍ତବ୍ୟା ଗୁରୁଗୀତା ପ୍ରଯତ୍ନତଃ ॥୧୯୭ ॥

ସତ୍‌କର୍ମ ପରିପାକ ଦ୍ୱାରା ଚିତ୍ତ ଶୁଦ୍ଧ ହୋଇଥିବା ବୁଦ୍ଧିମାନ ସାଧକକୁ ଗୁରୁଗୀତା ପ୍ରଯତ୍ନପୂର୍ବକ କହିବା ଉଚିତ ॥୧୯୭ ॥

ସତ୍‌କର୍ମ ପରି- ପାକ ଦ୍ୱାରା ଶୁଦ୍ଧ
ଚିତ୍ତ ଯା'ର ହୋଇଥିବ,
ବୁଦ୍ଧିମାନ ସେହି ସାଧକକୁ ଗୁରୁ
ଗୀତା ପ୍ରଯତ୍ନେ କହିବ ।୧୯୭ ।

ନାସ୍ତିକାୟ କୃତଘ୍ନାୟ ଦାଂଭିକାୟ ଶଠାୟ ଚ ।
ଅଭକ୍ତାୟ ବିଭକ୍ତାୟ ନ ବାଚ୍ୟେୟଂ କଦାଚନ ॥୧୯୮ ॥

ନାସ୍ତିକ, କୃତଘ୍ନ, ଦାମ୍ଭିକ, ଶଠ, ଅଭକ୍ତ ଏବଂ ଭଗବତ ବିରୋଧୀକୁ କଦାପୀ ଏହି ଗୁରୁଗୀତା କହିବା ଉଚିତ ନୁହେଁ ॥୧୯୮ ॥

କୃତଘ୍ନ ନାସ୍ତିକ ଅଭକ୍ତ ଦାମ୍ଭିକ
ଭଗବତ ଦ୍ୱେଷୀ ଶଠ,
ଏମାନଙ୍କ ଆଗେ କହିବନି କେବେ
ଗୁରୁ ଗୀତା ଦିବ୍ୟ ପାଠ ।୧୯୮ ।

ସ୍ତ୍ରୀଲୋଲୁପାୟ ମୂର୍ଖାୟ କାମୋପହତଚେତସେ ।
ନିନ୍ଦକାୟ ନ ବକ୍ତବ୍ୟା ଗୁରୁଗୀତା ସ୍ୱଭାବତଃ ॥୧୯୯ ॥

ସ୍ତ୍ରୀ ଲମ୍ପଟ, ମୂର୍ଖ, କାମୀ ତଥା ନିନ୍ଦୁକକୁ ଗୁରୁଗୀତା କଦାପି କହିବା ଉଚିତ ନୁହେଁ ॥୧୯୯ ॥

ସ୍ତ୍ରୀ ଲମ୍ପଟ ମୂର୍ଖ କାମ ଚିନ୍ତା ଯୁକ୍ତ

ନିନ୍ଦୁକ ବ୍ୟକ୍ତି ସମ୍ମୁଖେ,

କହିବନି କେବେ ଗୁରୁଗୀତା ଜ୍ଞାନ

ଗୁରୁଭକ୍ତ ନିଜ ମୁଖେ ।୧୯୯ ।

ଏକାକ୍ଷରପ୍ରଦାତାରଂ ଯୋ ଗୁରୁର୍ନୈ ବ ମନ୍ୟତେ ।
ଶ୍ୱାନଯୋନିଶତଂ ଗତ୍ୱା ଚାଣ୍ଡାଳେଷ୍ୱପି ଜାୟତେ ।।୨୦୦ ।।

ଏକାକ୍ଷର ମନ୍ତ୍ର ଉପଦେଶ ଦେଉଥିବା ବ୍ୟକ୍ତିଙ୍କୁ ଯିଏ ଗୁରୁ ବୋଲି ମାନେ ନାହିଁ ସେ ଶହେ ଜନ୍ମ ପର୍ଯ୍ୟନ୍ତ କୁକୁର ହୋଇ ପୁଣି ଚାଣ୍ଡାଳ ଯୋନିରେ ଜନ୍ମ ନେଇଥାଏ ।।୨୦୦ ।।

ଏକାକ୍ଷର ମନ୍ତ୍ର ପ୍ରଦାତାଙ୍କୁ ଯିଏ

ମାନେନା ଗୁରୁ ରୂପରେ,

ଶତ ଜନ୍ମ ଶ୍ୱାନ ପୁନଶ୍ଚ ଚାଣ୍ଡାଳ

ନିଅଇ ଜନ୍ମ ଯୋନିରେ ।୨୦୦ ।

ଗୁରୁତ୍ୟାଗାଦ୍ ଭବେତ୍ ମୃତ୍ୟୁର୍ମନ୍ତ୍ରତ୍ୟାଗାଦ୍ଦରିଦ୍ରତା ।
ଗୁରୁମନ୍ତ୍ରପରିତ୍ୟାଗୀ ରୌରବଂ ନରକଂ ବ୍ରଜେତ ।।୨୦୧ ।।

ଗୁରୁଙ୍କୁ ତ୍ୟାଗକଲେ ମୃତ୍ୟୁ ହୁଏ । ମନ୍ତ୍ରକୁ ତ୍ୟାଗକଲେ ଦରିଦ୍ରତା ଆସେ ଏବଂ ଗୁରୁ ଓ ମନ୍ତ୍ର ଉଭୟ ତ୍ୟାଗ କରିବା ଦ୍ୱାରା ରୌରବ ନରକ ପ୍ରାପ୍ତି ହୁଏ ।।୨୦୧ ।।

ଗୁରୁ ତ୍ୟାଗେ ମୃତ୍ୟୁ ମନ୍ତ୍ରେ ଦରିଦ୍ରତା

ମିଳଇ ତ୍ୟାଗକର୍ତ୍ତାଙ୍କୁ,

ଗୁରୁ ମନ୍ତ୍ର ଦୁଇ ତ୍ୟାଗ କରେ ଯିଏ

ପାଏ ରୈରବ ନର୍କକୁ ।୨୦୧ ।

ଶିବକ୍ରୋଧାତ୍ ଗୁରୁସ୍ତ୍ରାତା ଗୁରୁକ୍ରୋଧାଚ୍ଛିବୋ ନ ହି !
ତସ୍ମାତ୍ସର୍ବପ୍ରଯତ୍ନେନ ଗୁରୁରାଜ୍ଞାଂ ନ ଲଂଘୟେତ୍ ।।୨୦୨ ।।

ଶିବଙ୍କ କ୍ରୋଧରୁ ଗୁରୁଦେବ ରକ୍ଷା କରନ୍ତି ହେଲେ ଗୁରୁଦେବ କ୍ରୋଧ କଲେ ଶିବ ରକ୍ଷା କରି ପାରନ୍ତି ନାହିଁ । ଏଣୁ ସବୁ ଦୃଷ୍ଟିରୁ ଗୁରୁ ଆଜ୍ଞାକୁ ଉଲ୍ଲଂଘନ କରିବା ଉଚିତ ନୁହେଁ ।।୨୦୨ ।।

ଶିବ କ୍ରୋଧୁ ରକ୍ଷା କରିପାରେ ଗୁରୁ
ଗୁରୁ କ୍ରୋଧ କଲେ ଶିବ,
ପାରନ୍ତିନି ରକ୍ଷା କରି ତେଣୁ ଗୁରୁ
ଆଜ୍ଞା କେବେ ନ ଲଙ୍ଘିବ ।୨୦୨ ।

ସପ୍ତକୋଟି ମହାମନ୍ତ୍ରାଶ୍ଚିତ୍ତବିଭ୍ରଂଶକାରକାଃ ।
ଏକ ଏବ ମହାମନ୍ତ୍ରୋ ଗୁରୁରିତ୍ୟକ୍ଷରଦ୍ୱୟମ୍ ।।୨୦୩ ।।

ସାତକୋଟି ମହାମନ୍ତ୍ର ବିଦ୍ୟମାନ ଅଛି । ଏ ସମସ୍ତ ଚିତ୍ତକୁ ଭ୍ରମିତ କରିଥାନ୍ତି । ଦୁଇ ଅକ୍ଷରଯୁକ୍ତ ଏକମାତ୍ର ମହାମନ୍ତ୍ର 'ଗୁରୁ' ହିଁ ଚିତ୍ତ ଶାନ୍ତି ପ୍ରଦାନକାରୀ ।।୨୦୩ ।।

ସପ୍ତକୋଟି ମହା ମନ୍ତ୍ର ଛନ୍ତି ଯିଏ
ଚିତ୍ତେ ଭ୍ରମ ଉପୁଯାନ୍ତି,
ଦ୍ୱିଅକ୍ଷର 'ଗୁରୁ' ଏକମାତ୍ର ମନ୍ତ୍ର
ଦିଏ ଯିଏ ଚିତ୍ତ ଶାନ୍ତି ।୨୦୩ ।

ନ ମୃଷା ସ୍ୟାଦିୟଂ ଦେବି ମଦୁକ୍ତିଃ ସତ୍ୟରୂପିଣୀ ।
ଗୁରୁଗୀତାସମଂ ସ୍ତୋତ୍ରଂ ନାସ୍ତି ନାସ୍ତି ମହୀତଳେ ।।୨୦୪ ।।

ହେ ଦେବୀ ! ମୋର ଏହି କଥା କେବେ ମିଥ୍ୟା ହେବ ନାହିଁ, ଏହା ସତ୍ୟସ୍ୱରୂପ । ଏହି ପୃଥ୍ୱୀରେ ଗୁରୁଗୀତା ସମାନ ଅନ୍ୟ କିଛି ସ୍ତୋତ୍ର ନାହଁ ।।୨୦୪ ।।

ହେ ଦେବୀ ! ମୋର ଏ କଥା କେବେ ମିଥ୍ୟା
ହେବ ନାହିଁ ଏହା ସତ୍ୟ,
ଏହି ସଂସାରରେ ଗୁରୁ ଗୀତା ସମ
ଆଉ ନାହିଁ ଅନ୍ୟ ସ୍ତୋତ୍ର ।୨୦୪ ।

ଗୁରୁଗୀତାମିମାଂ ଦେବି ଭଳଦୁଃଖବିନାଶିନୀମ୍ ।
ଗୁରୁଦୀକ୍ଷା ବିହୀନସ୍ୟ ପୁରତୋ ନ ପଠେତ୍ କ୍ୱଚିତ ।।୨୦୫ ।।

ଭବଦୁଃଖକୁ ନାଶ କରୁଥିବା ଏହି ଗୁରୁଗୀତା ଗୁରୁଦୀକ୍ଷା ବିହୀନ ମନୁଷ୍ୟ ଆଗରେ ପାଠ କରିବା ଉଚିତ ନୁହେଁ ।।୨୦୫ ।।

ଭବ ଦୁଃଖ ନାଶ କରଣେ ସମର୍ଥ
ଏ ଗୁରୁଗୀତା ପଠନ
ଗୁରୁ ଦୀକ୍ଷା ହୀନ ମନୁଷ୍ୟ ସମ୍ମୁଖେ
କରିବନି ରଖ ମନ ।୨୦୫ ।

ରହସ୍ୟମତ୍ୟନ୍ତରହସ୍ୟମେତନ୍ନ ପାପିନା ଲଭ୍ୟମିଦଂ ମହେଶ୍ୱରି ।
ଅନେକଜନ୍ମାର୍ଜିତପୂଣ୍ୟପାକାଦ୍ ଗୁରୋସ୍ତୁ ତତ୍ତ୍ୱଂ ଲଭତେ ମନୁଷ୍ୟଃ ।।୨୦୬ ।।

ହେ ମହେଶ୍ୱରୀ ! ଏହା ଅତ୍ୟନ୍ତ ଗୁପ୍ତ ରହସ୍ୟ । ପାପୀମାନଙ୍କୁ ଏହା ମିଳି ନ ଥାଏ । ଅନେକ ଜନ୍ମର ପୁଣ୍ୟାର୍ଜନ ଦ୍ୱାରା ମନୁଷ୍ୟ ଗୁରୁତତ୍ତ୍ୱକୁ ପ୍ରାପ୍ତ କରିପାରେ ।।୨୦୬ ।।

ଅନେକ ଜନ୍ମର ପୁଣ୍ୟାର୍ଜନ ଦ୍ୱାରା
ଗୁରୁତତ୍ତ୍ୱ ପ୍ରାପ୍ତ ହୁଏ,
ଅତ୍ୟନ୍ତ ଗୁପତ ଆହେ ମହେଶ୍ୱରୀ !
ପାପୀଙ୍କୁ ମିଳି ନ ଥାଏ ।୨୦୬ ।

ସର୍ବତୀର୍ଥାବଗାହସ୍ୟ ସଂପ୍ରାପ୍ନୋତି ଫଳଂ ନରଃ ।
ଗୁରୋଃ ପାଦୋଦକଂ ପୀତ୍ୱା ଶେଷଂ ଶିରସି ଧାରୟନ୍ ।।୨୦୭ ।।

ଶ୍ରୀ ସଦ୍‌ଗୁରୁଦେବଙ୍କ ଚରଣାମୃତ ପାନ କରିବା ଏବଂ ମସ୍ତକରେ ଧାରଣ କରିବା ଦ୍ୱାରା ମନୁଷ୍ୟ ସର୍ବତୀର୍ଥ ସ୍ନାନ କରିବାର ଫଳ ପ୍ରାପ୍ତ ହୁଏ ।।୨୦୭ ।।

ସଦ୍ଗୁରୁ ଦେବଙ୍କ ପାଦୋଦକ ପାନ
ଶିରରେ କଲେ ଧାରଣ,

ସର୍ବତୀର୍ଥ ଜଳେ ସ୍ନାନ କରିବାର
ପ୍ରାପ୍ତ ହୁଏ ଫଳମାନ ।୨୦୭ ।

ଗୁରୁପାଦୋଦକଂ ପାନଂ ଗୁରୋରୁଚ୍ଛିଷ୍ଟଭୋଜନମ୍ ।
ଗୁରୁମୂର୍ତ୍ତେଃ ସଦା ଧ୍ୟାନଂ ଗୁରୋର୍ନାମ୍ନଃ ସଦା ଜପଃ ।।୨୦୮ ।।

ଗୁରୁଦେବଙ୍କ ଚରଣାମୃତ ପାନ କରିବା, ଗୁରୁଦେବଙ୍କ ଉଚ୍ଛିଷ୍ଟ ଭୋଜନ କରିବା, ଗୁରୁଦେବଙ୍କ ମୂର୍ତ୍ତିକୁ ଧାନ କରିବା ଏବଂ ସର୍ବଦା ଗୁରୁନାମ ଜପ କରିବା ଉଚିତ ।।୨୦୮ ।।

ପଦୋଦକ ପାନ ଗୁରୁ ନାମ ଜପ
ଗୁରୁ ଉଚ୍ଛିଷ୍ଟ ଭୋଜନ,
ଗୁରୁ ଭକ୍ତ ସଦା କରିବା ଉଚିତ
ଗୁରୁଙ୍କ ମୂର୍ତ୍ତିକୁ ଧାନ ।୨୦୮ ।

ଗୁରୁରେକୋ ଜଗତ୍‌ସର୍ବଂ ବ୍ରହ୍ମାବିଷ୍ଣୁଶିବାତ୍ମକମ୍ ।
ଗୁରୋଃ ପରତରଂ ନାସ୍ତି ତସ୍ମାତ୍‌ସଂପୂଜୟେଦ୍ ଗୁରୁମ୍ ।।୨୦୯ ।।

ବ୍ରହ୍ମା, ବିଷ୍ଣୁ ଏବଂ ଶିବଙ୍କ ସହିତ ସମସ୍ତ ଜଗତ, ଗୁରୁଦେବଙ୍କ ମଧରେ ସମାବିଷ୍ଟ । ଗୁରୁଦେବଙ୍କ ବ୍ୟତିରେକ ଆଉ କିଛି ନାହିଁ । ଏଥିପାଇଁ ଗୁରୁଦେବଙ୍କର ପୂଜା କରିବା ଉଚିତ ।।୨୦୯ ।।

ଗୁରୁ ଶରୀରରେ ସମାବିଷ୍ଟ ବ୍ରହ୍ମା
ବିଷ୍ଣୁ ଜଗତ ଶଙ୍କର,
ଗୁରୁ ବିନା ଆଉ କିଛି ନାହିଁ ତେଣୁ
ପୂଜ ଗୁରୁଙ୍କ ପୟର ।୨୦୯ ।

ଜ୍ଞାନଂ ବିନା ମୁକ୍ତିପଦଂ ଲଭ୍ୟତେ ଗୁରୁଭକ୍ତିତଃ ।
ଗୁରୋଃ ସମାନତୋ ନାନ୍ୟତ୍ ସାଧନଂ ଗୁରୁମାର୍ଗିଣାମ୍ ।।୨୧୦ ।।

ଜ୍ଞାନ ବିନା ମଧ୍ୟ ଗୁରୁଦେବଙ୍କ ପ୍ରତି ଅନନ୍ୟ ଭକ୍ତି ଦ୍ୱାରା ମୋକ୍ଷପଦ ମିଳିଥାଏ । ଗୁରୁମାର୍ଗରେ ଚାଲୁଥିବା ବ୍ୟକ୍ତିଙ୍କ ପାଇଁ ଗୁରୁଦେବ ହିଁ ଏକମାତ୍ର ସାଧନ ।।୨୧୦ ।।

ଗୁରୁଦେବ ପ୍ରତି ଅନନ୍ୟ ଭକତି
ବଳେ ଜ୍ଞାନ ହୀନ ଜନ,
ମୋକ୍ଷ କରେ ପ୍ରାପ୍ତ ଗୁରୁ ଏକ ମାତ୍ର
ଶିଷ୍ୟର ଅବଲମ୍ବନ ।୨୧୦।

ଗୁରୋଃ କୃପାପ୍ରସାଦେନ ବ୍ରହ୍ମାବିଷ୍ଣୁଶିବାଦୟଃ ।
ସାମର୍ଥ୍ୟମଭଜନ୍ ସର୍ବେ ସୃଷ୍ଟିସ୍ଥିତ୍ୟଂତକର୍ମଣି ।।୨୧୧ ।।

ଗୁରୁଙ୍କ କୃପାପ୍ରସାଦରୁ ହିଁ ବ୍ରହ୍ମା, ବିଷ୍ଣୁ ଏବଂ ଶିବ ଯଥାକ୍ରମେ ଜଗତର ସୃଷ୍ଟି, ସ୍ଥିତି ଏବଂ ପ୍ରଳୟ କରିବାର ସାମର୍ଥ୍ୟ ପ୍ରାପ୍ତି କରିଛନ୍ତି ।।୨୧୧ ।।

ଗୁରୁଦେବଙ୍କର କୃପା ପ୍ରସାଦରୁ
ବ୍ରହ୍ମା ବିଷ୍ଣୁ ମହେଶ୍ୱର,
ପ୍ରାପ୍ତ କରିଛନ୍ତି ଜଗତର ସୃଷ୍ଟି
ସ୍ଥିତି ପ୍ରଳୟର ଅଧିକାର ।୨୧୧।

ମନ୍ତ୍ରରାଜମିଦଂ ଦେବି ଗୁରୁରିତ୍ୟକ୍ଷରଦ୍ୱୟମ୍ ।
ସ୍ମୃତିବେଦପୁରାଣାନାଂ ସାରମେବ ନ ସଂଶୟଃ ।।୨୧୨ ।।

ହେ ଦେବୀ! 'ଗୁରୁ' ଏହି ଦୁଇ ଅକ୍ଷର ବିଶିଷ୍ଟ ମନ୍ତ୍ର ସମସ୍ତ ମନ୍ତ୍ରମାନଙ୍କର ରାଜା ଏବଂ ଶ୍ରେଷ୍ଠ । ସ୍ମୃତି, ବେଦ ଏବଂ ପୁରାଣର ଏହା ସାର, ଏଥିରେ ସନ୍ଦେହ ନାହିଁ ।।୨୧୨ ।।

ହେ ଦେବୀ! ପୁରାଣ ସ୍ମୃତି ବେଦ ସାର
'ଗୁରୁ' ମନ୍ତ୍ର ଦ୍ୱି ଅକ୍ଷର,
ମନ୍ତ୍ର ମଧ୍ୟେ ଶ୍ରେଷ୍ଠ ମନ୍ତ୍ରଙ୍କର ରାଜା
ସନ୍ଦେହ ଏଥେ ନ କର ।୨୧୨।

ଯସ୍ୟ ପ୍ରସାଦାଦହମେବ ସର୍ବଂ ।
ମୟ୍ୟେବ ସର୍ବଂ ପରିକଳ୍ପିତଂ ଚ ।
ଇତ୍ଥଂ ବିଜାନାମି ସଦାତ୍ମରୂପଂ ।
ତସ୍ୟାଂଘ୍ରି ପଦ୍ମଂ ପ୍ରଣତୋଽସ୍ମି ନିତ୍ୟମ୍ ।।୨୧୩ ।।

'ମୁଁ ହିଁ ସବୁ କିଛି, ମୋ ଦ୍ୱାରା ହିଁ ସମସ୍ତ କଳ୍ପିତ ।' ଯାହାଙ୍କ କୃପାପ୍ରସାଦରୁ ଏପରି ଜ୍ଞାନ ହୋଇଛି, ସେହି ଆତ୍ମସ୍ୱରୂପ ଶ୍ରୀସଦ୍‌ଗୁରୁଦେବଙ୍କ ଚରଣ କମଳରେ ନିତ୍ୟ ପ୍ରଣାମ କରୁଛି ।।୨୧୩ ।।

'ମୁଁ ହିଁ ସବୁ କିଛି                    ମୋ ଦ୍ୱାରା କଳ୍ପିତ

ସବୁ' ଯାହା କୃପା ବଳେ,

ଜ୍ଞାନ ଲଭିଛି ମୁଁ                    ନିତ୍ୟ ପ୍ରଣମେ ସେ

ସଦ୍ଗୁରୁ ପଦ କମଳେ ।୨୧୩ ।

ଅଜ୍ଞାନତିମିରାନ୍ଧସ୍ୟ ବିଷୟାକ୍ରାନ୍ତଚେତସଃ ।

ଜ୍ଞାନପ୍ରଭାପ୍ରଦାନେନ ପ୍ରସାଦଂ କୁରୁ ମେ ପ୍ରଭୋ ।।୨୧୪ ।।

ହେ ପ୍ରଭୁ ! ମୋ ପରି ଅଜ୍ଞାନରୂପୀ ଘନ ଅନ୍ଧକାର ମଧ୍ୟରେ ଅନ୍ଧ ହୋଇଥିବା ତଥା ବିଷୟମାନଙ୍କ ଦ୍ୱାରା ଆକ୍ରାନ୍ତ ଚିତ୍ତଧାରୀ ବ୍ୟକ୍ତିକୁ କୃପାକରି ଜ୍ଞାନର ଆଲୋକ ପ୍ରଦାନ କରନ୍ତୁ ।।୨୧୪ ।।

ହେ ପ୍ରଭୁ ! ଅଜ୍ଞାନ                    ତିମିରରେ ଅନ୍ଧ

ଚିତ୍ତ ମୋ ବିଷୟାକ୍ରାନ୍ତ,

କୃପାକରି ଜ୍ଞାନ                    ଆଲୋକ ଦିଅନ୍ତୁ

ନ ହେବି ମୁହିଁ ଉଦ୍ଭ୍ରାନ୍ତ ।୨୧୪ ।

ଇତିଶ୍ରୀ ସ୍କାନ୍ଦେତ୍ତର ଖଣ୍ଡେ ଉମାମହେଶ୍ୱର ସମ୍ବାଦେ ଶ୍ରୀ ଗୁରୁଗୀତାୟାଂ ତୃତୀୟୋଽଧ୍ୟାୟଃ ।।

ଏହି ପରି ଭାବରେ ସ୍କାନ୍ଦୋତ୍ତର ଖଣ୍ଡେ ଶିବ-ପାର୍ବତୀ କଥୋପକଥନର ଶ୍ରୀଗୁରୁଗୀତା ତୃତୀୟ ଅଧ୍ୟାୟ ଶେଷ ହେଲା ।



# ଗୁରୁ

ଗୁରୁ ସେହି ନାମ ଜଗତରେ ସାର
ଶୁଣ ମୋର ସାଥି ଗଣ,
ଆକାଶରୁ ଉଚ୍ଚ ଧରିତ୍ରୀ ଠୁ ବଡ଼
ସାରା ସଂସାରେ ମହାନ ।୧ ।
ଅଜ୍ଞାନ ତିମିର ହୁଏ ଦୂରିଭୁତ
ସୁମରିଲେ ତାଙ୍କ ନାଆଁ,
ଜ୍ଞାନର ଆଲୋକ ହୁଏ ପ୍ରଜ୍ୱଳିତ
ପାଇଗଲେ ତାଙ୍କ ଛୁଆଁ ।୨ ।
ଦେହେ ବାଜିଗଲେ ଯା' ସେନେହ ଛାଟ
ଆପେ ଦିଶିଯାଏ ବାଟ,
ସ୍ନେହ ବୋଳା ହାତ ଶିରେ ଲାଗିଗଲେ
ମନ ହୁଏ ଉଲ୍ଲସିତ ।୩ ।
ଜୀବନ ପଥଟି ହୁଅଇ ସୁଗମ
ମାନିଥିଲେ ତାଙ୍କ ବାକ୍ୟ,
ଅନୁସରି ଗଲେ ତାଙ୍କ ଦେଖା ପଥ
ହୁଏ ଜୀବନ ସାର୍ଥକ ।୪ ।
ଯାହା କିଛି ଆମେ ହାସଲ କରିଛେ
ପାଇଛେ ଯାହା ଜୀବନେ
ସବୁ ସଫଳତା ଗୁରୁଙ୍କ ଦୟାରୁ
ରଖିବାକୁ ହେବ ମନେ ।୫।
ସର୍ବଦା ରଖିବା ଗୁରୁଙ୍କ ପୟରେ
ଦୃଢ଼କରି ଆମେ ମନ,
ଜୀବନ ଯୁଦ୍ଧରେ ହାରିବାନି କେବେ
ଅଟେ ଏ ସତ୍ୟ ବଚନ ।୬ ।



# ପ୍ରଥମ ଗୁରୁ

ଗୁରୁ ବିନା ବିଦ୍ୟା ନାହିଁ ଏ ସଂସାରେ
ଗୁରୁ ବିନା ଶିଷ୍ୟ ଅନ୍ଧ,
ଗୁରୁ ବିନା ଶିଷ୍ୟ ବୁଝି ପାରେ ନାହିଁ
ଦୁନିଆଁଦାରିର ଛନ୍ଦ ।୧ ।

ଜନମ ଲଭୁଣୁ ଶିକ୍ଷା ଦିଏ ମାଆ
ପ୍ରଥମ ଗୁରୁଟି ସିଏ,
ଅମୃତ ଭାଣ୍ଡରେ ମୁହଁକୁ ଲଗାଇ
ଖାଇବା ଶିଖାଏ ଯିଏ ।୨ ।

ଓଠରେ ଓଠକୁ ମିଶାଇ ଶିଖାଏ
ଶବଦର ଜାଦୁକରି,
ଗୋଟି ଗୋଟି କରି ମଣିଷ ଚିହ୍ନାଏ
ସଂସାରେ କିଏ କିପରି ।୩ ।

ଦେବକୀ ହେଉକି ଯଶୋଦା ହେଉ ସେ
ହେଉ ଅବା କଇକେଇ,
ମାଆ ପରି ଗୁରୁ ସଂସାରେ ବିରଳ
ଲଢେ ଯିଏ ଶିଷ୍ୟ ପାଇଁ ।୪ ।



# ଋଣ ପରିଶୋଧ

ଦିନେ ଝିଅଟିଏ ବସରୁ ଓହ୍ଲାଇ
କର୍ମ କ୍ଷେତ୍ରେ ଯାଉ ଯାଉ,
ଦେଖିଲା ମାଗୁଛି ଭିକାରୁଣୀଟିଏ
ନୟନେ ଅଶ୍ରୁର ଢେଉ ।୧ ।
ଦଶଟଙ୍କାଟିଏ ଭେନିଟିରୁ କାଢ଼ି
ଦେବାବେଳେ ଭିକାରୁଣୀ,
ମୁହଁଟି ଲାଗିଲା ଚିହ୍ନା ଚିହ୍ନା ତାକୁ
ଯାହାପାଶେ ସିଏ ଋଣୀ ।୨ ।
ନିରେଖି ଚାହିଁଲା ଚିହ୍ନିକି ଦେଖିଲା
ଅନୁମାନ ତା'ର ସତ୍ୟ,
ସେହି ପରା ତା'ର ମେଟ୍ରିକ ବେଳରେ
ପଢାଉଥିଲେ ଗଣିତ ।୩ ।
ଦକ୍ଷ ଶିକ୍ଷୟିତ୍ରୀ ସୁନ୍ଦର ପଢାନ୍ତି
ସୁନାମ ତାଙ୍କର ଭାରି,
ପାଶେ ବସି ଝିଅ ପଚାରି ବୁଝିଲା
ହୀନ ଅବସ୍ଥା କିପରି ।୪ ।
କହିଲେ ଦୁଃଖରେ ଦୁଇହାତେ ପୋଛି
ଲୋତକ ଝରା ଲୋଚନ,
ଅବସର ପରେ ପେନ୍ସନ ବଦଳେ
ମିଳିଥିଲା ଯେତେ ଧନ ।୫ ।
ପୁଅବୋହୁ ମୋର ନେଇଯାଇ ବୃଦ୍ଧା
ବୟସେ ଅଦରକାରୀ,
ଘରୁ କାଢ଼ି ଦେଲେ ଅକଥ୍ୟ ଭାଷାରେ
ଗାଳି କରି ମାଡମାରି ।୬ ।

ଉପାୟ ନପାଇ ଭିକ୍ଷାବୃତ୍ତି କରି
ବଞ୍ଚୁଛି ସେହିଦିନରୁ,
ଫୁଟପାଥପରେ ଶୋଇ ଯାଉଅଛି
କରମ ହୀନ ଥିବାରୁ ।୭ ।
ଝିଅଟି ବୋଇଲା ନାମ ମୋର ଲୁସି
ଆପଣଙ୍କ ପ୍ରିୟ ଛାତ୍ରୀ,
ଯାହା ଆଜି ମୁଁ ହିଁ ହୋଇଛି ସେ ସବୁ
ତୁମ ହାତ କରାମତି ।୮ ।
ମୋ ସାଥିରେ ଚାଲ ମୋ ମାଆ ଆସନ
ଏବେ ପଡି ଅଛି ଶୂନ୍ୟ,
ସେବାରେ ତୁମର ଜୀବନ କରିବି
ବଞ୍ଚିଥିବ ଯେତେ ଦିନ ।୯ ।
ଜୀବନଟା ସାରା ଖଟି ଖଟି ଯିଏ
ବଳ ବୟସ ହାରିଲା,
ତା ପାଇଁ ପେନ୍ସନ ବ୍ୟବସ୍ଥା କିମ୍ପାଇଁ
ସରକାର ନ କରିଲା ।୧୦ ।
ପାଞ୍ଚ ବର୍ଷ ପାଇଁ ରାଜ୍ୟେ ରାଜା ହୋଇ
କ୍ଷମତା ହାତରେ ବୋଲି,
ନେଇ ଯାଉଛନ୍ତି ମନଇଚ୍ଛା ଯେତେ
ଦେଶର ଅମାର ଖୋଳି ।୧୧ ।
ଧନ୍ୟ ପୁଅ ବୋହୂ ଯା' ଛାତି ନିଗାଡ଼ି
ସୁଧା ପିଇ ହେଲ ବଡ଼,
ସେଇ ମାଆ ପ୍ରେମ ପ୍ରୀତି ଭୁଲିଗଲ
ତୁମ ମୁହେଁ ନିଆଁ ରଡ଼ ।୧୨ ।
ଗୁରୁମାତାଙ୍କର ଦୁଃଖକୁ ଜାଣିଲ
ଧନ୍ୟ ଧନ୍ୟ ତୁମେ ଛାତ୍ରୀ,
ଧନ୍ୟ ତୁମ ମନ ଧନ୍ୟ ତୁମ ହୃଦ
ହୃଦେ ତୁମ ଗୁରୁ ଭକ୍ତି ।୧୩ ।

# ଗୁରୁକୃପା

ଥିଲା ଗୁରୁଭକ୍ତ ପିଲାଟିଏ,
ଦଶମ ଶ୍ରେଣୀର ଚାଟ ସିଏ,
ବ୍ୟବହାର ତାର ଭାରି ସାଧାସିଧା
ସରଳତା ମନ କିଣି ନିଏ ।୧ ।

ଦିନେ ପହଞ୍ଚୁଣୁ ବିଦ୍ୟାଳୟେ
ଗୁରୁ ଗଲେ ଯେବେ କାର୍ଯ୍ୟାଳୟେ
ଦେଖିଲେ ଓଳାଇ ସଫାକରି କିଏ
ସଜେଇଛି ଦେବାଳୟ ପ୍ରାୟେ ।୨ ।

ଲଗାଇଛି ବାସ୍ନା ଧୂପବତୀ
ଥୋଇଛି ଜିନିଷ ଯଥାରୀତି
କୋଠରୀ ଦେଖିଲେ ମନ ପୂରିଯାଏ
ଦେଖି ଖୁସି ଗୁରୁଙ୍କର ମତି ।୩ ।

ପରଦିନ ଗୁରୁ ପୁନର୍ବାର
କକ୍ଷେ ଯେବେ ହୋଇଲେ ହାଜର
ଦେଖିଲେ କାନ୍ଥରେ ଲାଗିଛି ଖଟୁଲି
ଶୋଭେ ଫଟ ହନୁମାନଙ୍କର ।୪ ।

ଗୁରୁ ଦେଖି ମନେ ହେଲେ କାବା
କରୁଛି ଏ କାମ କିଏ ଅବା
ଜାଣିବାକୁ ଚପରାସିକୁ ଡକାଇ
ବିଚାରିଲେ ତଦନ୍ତ କରିବା ।୫ ।

ଚପରାସି ବୋଇଲା ଜାଣିନି
ମୁଁ ନିଜେ ଏ କାମ ବି କରିନି
ଛାତ୍ରଙ୍କ ମଧ୍ୟରୁ କରିଛି କିଏ ସେ
ଜିଜ୍ଞାସା ବଢ଼ିଲା ଏହା ଘେନି ।୬ ।

ବହୁତ ସଅଳ ପରଦିନ
କାର୍ଯ୍ୟାଳୟେ କରି ଆଗମନ
ଅପେକ୍ଷା କରିଣ ରହିଲେ ଜାଣିବେ
କରେ କେ ଏ କାମ ସବୁଦିନ ।୭ ।
ଦଶଟା ନବାଜୁଣୁ ଘଣ୍ଟାରେ
ପିଲାଟିଏ ତହିଁ ଆସି ଧିରେ
କାର୍ଯ୍ୟାଳୟ ଦୁଆର ପାଶେ ପହଁଚି
ଖୋଲିଲା କବାଟ ଧିରେ ଧିରେ ।୮ ।
ଖୋଲୁ ଖୋଲୁ ଗୁରୁଙ୍କର ନେତ୍ର
ପଥାରୁଢ଼ ହେଲା ସେହି ଛାତ୍ର
ପାଖକୁ ଡକାଇ ବୋଇଲେ ପ୍ରତ୍ୟହ
କରୁଛୁ ତୁ ଏ କାମ ପବିତ୍ର ।୯ ।
ଲାଜେଇ ଶିଷ୍ୟ ଟୁଙ୍ଗାରି ଶିର
ସମ୍ମତ ହେଲା ନ କହି ଗୀର
ଗୁରୁ ତା' କାର୍ଯ୍ୟରେ ଖୁସି ପ୍ରକାଶିଲେ
ବୋଇଲେ ପ୍ରଶଂସ୍ୟ କାମ ତୋର ।୧୦ ।
ପୁଛିଲେ ତୁ କି ଇଂଜିନିୟର
ହେବୁ କହ ମନ କରି ସ୍ଥିର
ପିଲାଟି କହିଲ ହସି ଖିଲି ଖିଲି
ଗରୁଦେବ ଦେବି କି ଉତ୍ତର ।୧୧ ।
ପାଞ୍ଚଟି ବିଷୟରେ ମୁଁ ଫେଲ
ସ୍ୱପ୍ନ ଦେଖିବାଟା ନୁହେଁ ଭଲ
ପାଆାସ କରିବି କିପରି ଭାବୁଛି
ଚନ୍ଦ୍ରମା ଧରିବାକୁ କହିଲ ।୧୨ ।

ଗୁରୁ ଗୁରୁତ୍ୱ ଦେଇ କହିଲେ
ହେବୁ ମନଟାକୁ ଦୃଢ଼ କଲେ
ହେବାକୁ ମନଟା ଅଛି କି ତୋହାର
କହ କଥା ଦେଉଛି ତୋ ତୁଲେ ।୧୩ ।
ପିଲାଟି ବୋଇଲା ଯଦି ହେବ
ହେବି ଯଦି ତୁମ୍ଭ କୃପା ଥିବ
ଆମ୍ବ ଗଛରେ କି ଆମ୍ବଡ଼ା ଫଳିବ
ଅସମ୍ଭବ କି ହେବ ସମ୍ଭବ ? ।୧୪ ।
ଗୁରୁ ଶୁଣାଇଲେ ଗୁରୁ ବାଣୀ
ପକା କାର୍ଯ୍ୟାଳୟେ ମେଜ ଆଣି
ଏଇଠାରେ ବସି ପାଠ ତୁ ପଢ଼ିବୁ
ଚାଲିବୁ ମୋ ପାଦେ ପାଦ ଗଣି ।୧୫ ।
ଶ୍ରେଣୀକୁ ଶିକ୍ଷକ ଯେବେ ଯିବେ
ତୁ ଦେଖି ଶ୍ରେଣୀକୁ ଯିବୁ ତେବେ
ଅନ୍ୟ ସମୟରେ ଏଇଠି ବସିବୁ
ସଫଳ ହୋଇବୁ ତେବେ ଭବେ ।୧୬ ।
ଗୁରୁ ନିର୍ଦ୍ଦେଶକୁ କର୍ଣ୍ଣେ ଶୁଣି
ବାକ୍ୟକୁ ଅକ୍ଷର ପରିମାଣି
କଥାକୁ କାର୍ଯ୍ୟରେ କରି ଦେଖାଇଲା
ଟେଷ୍ଟରେ ଆଣି ପ୍ରଥମ ଶ୍ରେଣୀ ।୧୮ ।
ଗୁରୁ ବୋଇଲେ ପ୍ରତ୍ୟେକ ଦିନ
ପ୍ରଭାତେ ଆସିବୁ ମୋ ସଦନ
ଇଂଜିନିୟରିଂ ପାଇଁ ପାଠ ପଢ଼ା
ହୋଇବ ଏଠି ଲଗାଇ ମନ ।୧୯ ।

ଦିନକର କଥା ସେହିପିଲା
ସକାଳେ ହାଜର ଆସି ହେଲା
ଗୁରୁ ପୂଜା ପାଇଁ ହେଉଥିଲେ ସଜ
ଗୁରୁ ଆସିବାରୁ ଦେଖାହେଲା ।୨୦ ।
ଗୁରୁ ବୋଇଲେ ମୁଁ ପୂଜା ସାରି
ଆସୁଛି ଅପେକ୍ଷା ଥାଅ କରି
ଗୁରୁ ପୂଜା ଘରେ ପୂଜାରେ ଲାଗିଲେ
ଶିଷ୍ୟ ଦାଣ୍ଡେ ଥିଲା ଅନୁସରି ।୨୧ ।
ଗୁରୁ ଭୁଲିଗଲେ ପୂଜା ପରେ
କାମଥିଲା ତାଙ୍କ କମ୍ପ୍ୟୁଟରେ
କାମ କରୁ କରୁ ଦ୍ୱିପହର ହେଲା
କିଛି କାର୍ଯ୍ୟେ ଗଲେ ଦାଣ୍ଡ ଦ୍ୱାରେ ।୨୨ ।
ଆଶ୍ଚର୍ଯ୍ୟ ହୋଇଲେ ଦେଖି କରି
ଖରାରେ ସେଯାଏଁ ସେହି ପରି
ନ ଆସି ପିଣ୍ଡାକୁ ସେମିତି ସେ ଦାଣ୍ଡେ
ଠିଆ ହୋଇଥିଲା ଯେହ୍ନେ ଗିରି ।୨୩ ।
ଡାକିଲେ ଘରକୁ ତା'କୁ ଗୁରୁ
କଷ୍ଟ ତୁ ପାଇଲୁ ମୋ ଦୋଷରୁ
ଇଂଜିନିୟର ତୁ ନିଶ୍ଚିତ ହୋଇବୁ
ଦେଉଛି ଆଶିଷ ହୃଦୟରୁ ।୨୪ ।
ପ୍ରସ୍ତୁତି ଚାଲିଲା ରୀତିମତ
ଏଣ୍ଟ୍ରାନ୍ସ ପରୀକ୍ଷା ଉପଗତ
ହେଲାଯାଏଁ କାଳ ନଷ୍ଟ ନ କରିଣ
ଲଗାଇ ଶରୀର ମନ ଚିତ୍ତ ।୨୫ ।

ଫଳ ମେଟ୍ରିକର ବାହାରିଲା
ପ୍ରଥମ ଶ୍ରେଣୀରେ ସେହିପିଲା
ଉତ୍ତୀର୍ଣ୍ଣ ହୋଇଣ ଗୁରୁ ଗୁରୁଜନ
ହୃଦୟ ଆନନ୍ଦେ ଭରିଦେଲା ।୨୬ ।
ବାହାରିଲା ଫଳ ଏଣ୍ଟ୍ରାନ୍ସର
ଦାଖିଲ ହୋଇଲା ସେ ପିଲାର
ସରକାରୀ ବୈଷୟିକ କଲେଜରେ
ଖୁସି ହେଲେ ତା'ର ପରିବାର ।୨୭ ।
କାଳକ୍ରମେ ପାଠପଢ଼ା ତା'ର
ସରିଲା କୃପାରେ ଗୁରୁଙ୍କର
ଗୋଟିଏ ବିଷୟ ବ୍ୟାକ୍ ଥାଇ ମଧ
ଚାକିରୀ ହୋଇଲା ପିଲାଟିର ।୨୮ ।
ପାଇଲା ସେ ଗୁରୁ ସେବା ଫଳ
ହୋଇଲା ପରୀକ୍ଷାରେ ସଫଳ
ଉଚ୍ଚତର ଅଧ୍ୟୟନ ବି କରିଲା
ମନ ଯେଣୁ ଥିଲା ତା' ନିର୍ମଳ ।୨୯ ।
ଗୁରୁଭକ୍ତି ବଳେ ବଳିୟାନ
ହେବାକୁ ଚେଷ୍ଟିତ ଶିଷ୍ୟଗଣ
ଜୀବନରେ ନିଶ୍ଚେ ସଫଳ ହୁଅନ୍ତି
ରଖିଗଲା ଜୀବନ୍ତ ପ୍ରମାଣ ।୩୦ ।



# ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦ

କାଳ ଡାକରାରେ ନରେନ୍ଦ୍ର ନାଥଙ୍କ
ପିତାଙ୍କର ମୃତ୍ୟୁ ପରେ,
ଘରର ଆର୍ଥିକ ସମ୍ପର୍ଣ୍ଣତା ନଷ୍ଟ
ହୋଇଗଲା ଧିରେ ଧିରେ ।
ସଞ୍ଚିତ ସମ୍ପତ୍ତି ସରି ସରି ଗଲା
ଯାହା ଥିଲା ମାତା ପାଶେ,
ରୋଜଗାରକ୍ଷମ ପରିବାର ମଧ୍ୟେ
ନ ଥିଲେ ଜଣେ କିଏସେ ।
ହେଲା ପରିସ୍ଥିତି ଏପରି ଦୁରୂହ
ମୌଳିକ ଆବଶ୍ୟକତା,
ପୂରଣ କରିବା ସେମାନଙ୍କ ପକ୍ଷେ
ସୃଷ୍ଟି କଲା ଘୋର ଚିନ୍ତା ।
କିଛି ରୋଜଗାର କରିବା ଲକ୍ଷ୍ୟରେ
ଖୋଜିବା ପାଇଁ ଚାକିରି,
ଉପାୟ ନ ପାଇ ନରେନ୍ଦ୍ର ଚଳିଲେ
ଗୃହ ମଧ୍ୟରୁ ବାହାରି ।
ଓକିଲଙ୍କ ଏକ କାର୍ଯ୍ୟାଳୟେ କାର୍ଯ୍ୟ
କରି ତାହା ସହିତରେ,
ପୁସ୍ତକ କେତେକ କରି ଅନୁବାଦ
ତହୁଁ ପ୍ରାପ୍ତ ରୋଜଗାରେ ।
ଯେନତେନ ଭାବେ ଘର ଚଳାଇଲେ
ସ୍ଥାୟୀ ଚାକିରି ନ ପାଇ,
ମାଆ ଭାଇଙ୍କର ଚିନ୍ତାରେ ଚିନ୍ତିତ
ରହିଲେ ସର୍ବଦା ହୋଇ ।

ଦିନେ ସେ ଭାବିଲେ ଠାକୁରଙ୍କ କଥା
ଶୁଣନ୍ତି ଜଗତ ମାତା,
କହିବି ତାହାଙ୍କୁ ଯାଇ ତାଙ୍କ ପାଶେ
ହରିବେ ମୋହର ଚିନ୍ତା ।
ଭାବି ଏହିପରି ଦକ୍ଷିଣେଶ୍ୱରରେ
ଯାଇ କଲେ ନିବେଦନ,
ହେ ଠାକୁର ତୁମେ ଆମ ପାଇଁ କୁହ
ମାତାଙ୍କର ସନ୍ନିଧାନ ।
ଆପଣ କହିଲେ ମୋ ପରିବାରର
ଆର୍ଥିକ ସମସ୍ୟା ଯେତେ,
ଚୁଟୁକିରେ ମାତ୍ର ଅପସରିଯିବ
ଆଶୀର୍ବାଦ କଲେ ମାତେ ।
ଠାକୁର କହିଲେ ମାଆ ଆଗେ ଏହା
କହିପାରିବିନି ମୁହିଁ,
କୁଣ୍ଠା କିମ୍ପା କର ନିଜେ ନିଜ କଥା
ମା' ଆଗେ କହିବା ପାଇଁ ।
ମାଆଙ୍କ ଉପରେ ବିଶ୍ୱାସ ଅଭାବୁ
ଭୋଗୁଛ ତୁମେ ଯନ୍ତ୍ରଣା,
କଥାମାନି ମୋର କର ଯାଇ ଏବେ
ମାତାଙ୍କ ଆଗେ ପ୍ରାର୍ଥନା ।
ନରେନ୍ଦ୍ର ନିଜର ଜିଦ୍ଦିରେ ଅଟଳ
ରହି କହିଲେ ଗୁରୁଙ୍କୁ,
ତୁମେ କୁହ ତାଙ୍କୁ ନ କଲେ ଯିବିନି
ଜାଣିନି ମୁହିଁ ମାଆଙ୍କୁ ।

ରାମକୃଷ୍ଣ ହସି　　　ସ୍ନେହରେ କହିଲେ
କହିଛି ଅନେକ ଥର,
ତୁମେ ଯେଣୁ ମା'କୁ　　　କରନି ବିଶ୍ୱାସ
ଶୁଣେନା ପ୍ରାର୍ଥନା ମୋର ।
କାଳି ମାତାଙ୍କର　　　ମନ୍ଦିରକୁ ଆଜି
ରାତିରେ ନିଦ୍ୱନ୍ଦ୍ୱେ ଯିବ,
ଚରଣେ ପ୍ରଣମି　　　ଯାହା ମନାସିବ
ନିଶ୍ଚେ ସେ ତୁମକୁ ଦେବ ।
ଐଶ୍ୱରୀୟ ଶକ୍ତି　　　ଭଣ୍ଡାର ମୋ ମାଆ
ବ୍ରହ୍ମାଣ୍ଡ ତାଠୁଁ ଜନମ,
ଚାହିବ ଯଦି ସେ　　　ତା'ପାଇଁ ସଂସାରେ
ଅସମ୍ଭବ କେଉଁ କାମ ।
ଠାକୁରଙ୍କ କଥା　　　ଶ୍ରବଣେ ଘେନିଣ
ନରେନ୍ଦ୍ର ହେଲେ ନିଶ୍ଚିତ,
ମାତାଙ୍କ ପ୍ରାର୍ଥନା　　　ଅନ୍ତେ ନିଶ୍ଚେ ହେବ
ମୋ ସମସ୍ୟା ସମାଧିତ ।
ଆଗ୍ରହ ସହିତ　　　ଆସିବାକୁ ରାତି
ନରେନ୍ଦ୍ର କଲେ ଅପେକ୍ଷା,
ଉପଯୁକ୍ତ କାଳ　　　ଉପଗତେ ଗୁରୁ
ବୋଇଲେ ଯା' କର ଦେଖା ।
ମନ୍ଦିର ଭିତରେ　　　ପ୍ରବେଶିଲେ ଯେବେ
ନରେନ୍ଦ୍ର ଅର୍ଦ୍ଧଚେତନ,
ଅବସ୍ଥାରେ ଥିବା　　　କଲେ ଅନୁଭବ
ଥରୁଥିଲା ତନୁ ମନ ।

ମାତାଙ୍କ ଦର୍ଶନ ମା' ସ୍ୱର ଶ୍ରବଣ
କରିବା ଦୃଢ଼ ବିଶ୍ୱାସ,
ବସ୍ତୁବାଦୀ ଏଇ ଜଗତକୁ ମନୁ
ଶୋଷୀ କଲା ନିଶେଷ ।
ସାଂସାରିକ ଚିନ୍ତା ସମସ୍ତ ମନରୁ
ଅଦୃଶ୍ୟ ହେଲା ତାଙ୍କର,
ଚେତନାକୁ ମାତା କାଳୀ ଆବୋରିଣ
ବସିଥିଲେ ମାତ୍ର ତା'ର ।
ମନ୍ଦିରେ ପ୍ରବେଶି ଦେଖିଲେ ମା' କାଳୀ
ପ୍ରକୃତରେ ଐଶ୍ୱରୀୟ,
ସାକ୍ଷାତ ଜୀବନ୍ତ ସୌନ୍ଦର୍ଯ୍ୟ କରୁଣା
କୃପା ଉତ୍ସ ପ୍ରେମମୟ ।
ହୃଦୟେ ତାଙ୍କର ଭରିଗଲା ଭକ୍ତି
ପରିପୂର୍ଣ୍ଣ ହେଲା ପ୍ରେମେ,
ସଂସାର ଜଞ୍ଜାଳ ଅପସରି ଦିବ୍ୟ
ଚେତନା ଆସିଲା କ୍ରମେ ।
ଚରଣେ ପ୍ରଣାମ କରି ବାରମ୍ବାର
କହିଲା ହେ ମାତା ମୋତେ,
ଠିକ୍ ଭୁଲ ମଧ୍ୟେ ପାର୍ଥକ୍ୟ ବାରିବା
ଶକ୍ତି ଦିଅ ମୋର ଚିତ୍ତେ ।
ଆଧ୍ୟତ୍ମିକ ଜ୍ଞାନ ଭକତି ପ୍ରଦାନ
କର ମା କରୁଣା କରି,
ପାଇବି ଦର୍ଶନ ବାଧାବିଘ୍ନ ବିନା
ସଦା ତୁମର ଯେପରି ।

ମନ ମୋର ସଦା ତୋର ଶ୍ରୀଚରଣେ
ପୁଷ୍ପେ ଯେସନ ଭ୍ରମର,
ଲାଗିରହିଥିବ ଭକ୍ତି ରସ ପିଇ
ଜୀବନ ସାରା ମୋହର ।
କହିବା ପାଇଁ ଯା ଆସିଥିଲେ ସିଏ
ସବୁ କେଣେ ଗଲା ହଜି,
ହୃଦୟରେ ଶାନ୍ତି ପୂରି ଯାଇଥିଲା
ଭକ୍ତ ରସେ ଥିଲେ ମଜି ।
ଆନନ୍ଦ ମନରେ ଗୁରୁଙ୍କର ପାଶେ
ନରେନ୍ଦ୍ର ଯେବେ ଫେରିଲେ,
ଇଚ୍ଛାପୂର୍ତ୍ତି ପାଇଁ ମାତାଙ୍କୁ ପ୍ରାର୍ଥନା
କଲ କି ବୋଲି ପୁଛିଲେ ।
ନରେନ୍ଦ୍ର ବୋଇଲେ ମାତାଙ୍କ ଦର୍ଶନ
ପାଇ ସବୁ ଭୁଲି ଗଲି,
ଏବେ କି କରିବି ସତ୍ପଥ ଦେଖାଅ
ନହେଲେ ଅଧାରେ ମଲି ।
ଗୁରୁ ପୁଣି ମାତା ନିକଟେ ଯିବାକୁ
ନରେନ୍ଦ୍ରେ ଦେଲେ ନିର୍ଦ୍ଦେଶ,
ଲେଉଟି କହିଲେ ପ୍ରଭୁ ସେହି ଏକା
କଥା ଘଟିଲା ପୁନଶ୍ଚ ।
ମାତା ସମ୍ମୁଖରେ ଠିଆ ହେବା ବେଳେ
ଦେଖି ଐଶ୍ୱରୀୟ ଶକ୍ତି,
ନିର୍ବାକ ପାଲଟି ସବୁ ଭୁଲି ଯାଇ
ମାଗୁଛି ଜ୍ଞାନ ଭକତି ।

ଏ ସବୁ ନାଟର ଗୋବର୍ଦ୍ଧନ ତୁମେ
ହେ ଠାକୁର ରାମକୃଷ୍ଣ,
ତୁମେ ହିଁ ଭୁଲେଇ ଦେଉଅଛ ମୋତେ
ଭୁଲୁଛି ମୁଁ ମୂଳ ପ୍ରଶ୍ନ ।
ନିଶ୍ଚିତ ମୁଁ ଏବେ ଆପଣ କେବଳ
ଦେବେ ମୋତେ ପ୍ରତିଶ୍ରୁତି,
ମାଆ ଭାଇ ଖାଦ୍ୟ ପୋଷାକ ପାଇବେ
ପର୍ଯ୍ୟାପ୍ତ ଭାବରେ ନିତି ।
ନରେନ୍ଦ୍ରଙ୍କ ଅଳି ପାରିଲେନି ଟାଳି
ଗୁରୁ କଲେ ଅଙ୍ଗୀକାର,
ଆଜିଠାରୁ ଗୃହେ ଅଭାବ ହେବନି
ଖାଦ୍ୟବସ୍ତ୍ର କେବେ ତୋର ।
ସମର୍ଥ ଗୁରୁ ସେ ସାଧନା ବଳେ ଯେ
ମା କାଳୀଙ୍କୁ ସଶରୀରେ,
ଦର୍ଶନ କରାଇ ପାରେ ତା ଶିଷ୍ୟକୁ
ବିରଳ ସାରା ସଂସାରେ ।
ଗୁରୁକୃପା ଫଳେ ଅସମ୍ଭବ ହୁଏ
ସମ୍ଭବ ଏହି ସଂସାରେ,
ସମର୍ଥ ଗୁରୁଙ୍କ ଚରଣରେ ତେଣୁ
ସେବିବ ବିନା ଦ୍ୱିଧାରେ ।
ଗୁରୁ ପ୍ରତି ଥାଏ ଯେ ଶିଷ୍ୟ ଭାବନା
ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ,
ସେହି ଗୁରୁଭକ୍ତି ପହଁଚାଏ ଲକ୍ଷ୍ୟ
ସ୍ଥଳେ ଯା' ତା'ର ଇପ୍ସିତ ।



# ଗୁରୁ ରାମଦାସ ଓ କଲ୍ୟାଣ

ଗୁରୁଙ୍କର ଆଜ୍ଞା ହୃଦୟ ସହିତ
ଯେ ଶିଷ୍ୟ ପାଳନ କରେ,
ତାହା ପରେ କେବେ କୌଣସି ବିପଦ
ଆସିବାକୁ ନିଜେ ଡରେ ।
ଗୁରୁ କୃପା ବଳେ ସମସ୍ତ କ୍ଷେତ୍ରରେ
ପାଏ ସିଏ ସଫଳତା,
ଉନ୍ନତି ଶିଖରେ ପହଞ୍ଚଇ ସିଏ
ରଖି ଗୁରୁ ପରେ ଆସ୍ଥା ।
ଏପରି ଜଣିଏ ଶିଷ୍ୟ ଥିଲେ ଯା'ର
ନାମଟି ଥିଲା କଲ୍ୟାଣ,
ମୂଳ ନାମ ଥିଲା ଅମ୍ବାଜୀ ଏ ନାମ
ଗୁରୁ କଳାରୁ କଲ୍ୟାଣ ।
ଥରେ ଆଶ୍ରମର କୂଅ ଉପରକୁ
ବଢ଼ିଥିଲା ଏକ ଡାଳ,
ଗୁରୁ ଆଦେଶିଲେ ଅମ୍ବାଜୀ କାଟିବୁ
ଏହାକୁ କରି କୌଶଳ ।
କାଟିବା ସମୟେ କୂଅରେ ପଡ଼ିବା
ବିପଦ ଯଦିଓ ଥିଲା,
ଗୁରୁଙ୍କ ଉପରେ ବିଶ୍ବାସ ସ୍ଥାପି ସେ
ଡାଳ କାଟିବାକୁ ଗଲା ।
ଗୁରୁଙ୍କର ଆଜ୍ଞା ପାଳନେ ଅମ୍ବାଜୀ
ଏପରି ଥିଲେ ଯେ ଲୀନ,
କୂଅରେ ପଡ଼ିବା ବିପଦ ତାଙ୍କର
ମନେ ନ ଥିଲା ସ୍ମରଣ ।

ଡାଳ କଟିଗଲା ତାସହି ଅମ୍ବାଜୀ
କୂପ ମଧ୍ୟେ ଗଲେ ପଡ଼ି,
ଗୁରୁଙ୍କ ସହିତ ଅନ୍ୟ ଶିଷ୍ୟ ଗଲେ
କୂଅ ପାଶକୁ ଦଉଡ଼ି ।
କୂଅ ଭିତରକୁ ଚାହିଁ ଗୁରୁ ବଡ଼
ପାଟିରେ ଡ଼ାକି କହିଲେ,
ହେ ଅମ୍ବାଜୀ ସର୍ବ କଲ୍ୟାଣ ତୁମର
ଅଛି କି ନାହିଁ ପୁଛିଲେ ।
ଅମ୍ବାଜୀ କୂଅର ଭିତରୁ ଉତ୍ତର
ଦେଲେ ତୁମ୍ଭରି କୃପାରୁ,
ସମସ୍ତ କଲ୍ୟାଣ କଲ୍ୟାଣର ଧାରା
ଝରୁଛି ଯେଣୁ ସାଗରୁ ।
ଗୁରୁ ନିର୍ଦ୍ଦେଶିଲେ ଏବେ କୂପ ମଧ୍ୟୁ
କୁଶଳେ ବାହାରି ଆସ,
ଅମ୍ବାଜୀ କୂଅରୁ ବାହାରି କୁଶଳେ
ପ୍ରଣମିଲେ ରାମଦାସ ।
ଗୁରୁ ଆଶୀର୍ବାଦେ କଲ୍ୟାଣ ଯାହାର
ନାମ ଜଗତ ଜାଣିଲା,
ସେହିଦିନ ଠାରୁ ଅମ୍ବାଜୀଙ୍କ ନାମ
କଲ୍ୟାଣ ଦାସ ହୋଇଲା ।
ଗୁରୁଙ୍କ ସହିତ ସାଜଜାଙ୍ଗ ଦୁର୍ଗେ
ବାସ କରୁଥିବା ବେଳେ,
ଜଳ ଯୋଗାଣର ବ୍ୟବସ୍ଥା ଦୁର୍ଗରେ
ଥିଲା ନାହିଁ ସେହିକାଳେ ।

କଲ୍ୟାଣକୁ ଗୁରୁ ନିକଟ ଗ୍ରାମରୁ
ଜଳ ବୋହି ଆଣିବାର,
ସେବାରେ ନିଯୁକ୍ତି କରିଥିଲେ ଯେଣୁ
ସିଏ ଥିଲା ଆଗଭର ।
ସାରା ଦିନ ତାଙ୍କ ଜଳ ବୋହିବାରେ
ହେଉଥିଲା ନିୟୋଜିତ,
ଗୁରୁ ଆଜ୍ଞା ପାଳି କଲ୍ୟାଣ ମନରେ
ହେଉଥିଲେ ଆନନ୍ଦିତ ।
ଆଧ୍ୟାତ୍ମିକ ପାଠ ଅଧ୍ୟୟନ ପାଇଁ
ଯେତେ ସମୟ ମିଳଇ,
ସେତିକିରେ ଗୁରୁ ଶ୍ରୀମୁଖ ପ୍ରସାଦ
ମଣି ସନ୍ତୁଷ୍ଟ ହୁଅଇ ।
ଗୁରୁ ଚରଣରେ ସର୍ବଦା ତାହାର
ଦୃଢ଼ ଭାବେ ଥାଏ ଲୟ,
ନିର୍ବିବାଦେ କର୍ମ କରି ଚାଲେ ସିଏ
ମନକୁ କରିଣ ଥୟ ।
ଅନ୍ୟ ଶିଷ୍ୟମାନେ ଅହରହ ଗୁରୁ
ପଢୁ ଥିଲେ ପାଶେ ରହି,
ତଥାପି କଲ୍ୟାଣ ଗୁରୁଙ୍କର ପ୍ରିୟ
କଷ୍ଟ ଦେଉଥିଲା ଏହି ।
ବୁଝିବାକୁ ଥିଲେ ଅକ୍ଷମ କାହିଁକି
ସେ ଥିଲା ଏତେ ଆପଣା,
ଧିରେ ଧିରେ ଶିଷ୍ୟ କଲ୍ୟାଣ ପାଇଁକି
ବଢ଼ିଲା ତାଙ୍କର ଘୃଣା ।

ଶିଷ୍ୟମାନେ ଘୃଣା ଈର୍ଷାରେ ପିଡ଼ିତ
ଥିବା କଥା ଗୁରୁ ଦେବ,
ଜାଣି ପୁଛାକଲେ ଦିନେ ଶିଷ୍ୟଗଣେ
ପ୍ରଶ୍ନ ଏକ ଅଭିନବ ।
ପ୍ରଶ୍ନ ଥିଲା କଷ୍ଟ କେହି ତା ଉତ୍ତର
ଦେବାକୁ ଅକ୍ଷମ ହେଲେ,
ସେତିକି ବେଳରେ କଲ୍ୟାଣ ସେ ବାଟେ
କିଛି କାର୍ଯ୍ୟେ ଯାଉଥିଲେ ।
ପାଶେ ଡାକି ଗୁରୁ ସମାନ ପ୍ରଶ୍ନଟି
ପଚାରିଲେ ଯେବେ ତା'ରେ,
ଆଶ୍ଚର୍ଯ୍ୟ ସମସ୍ତେ କଲ୍ୟାଣ ସମର୍ଥ
ହେଲା ଉତ୍ତର ଦେବାରେ ।
ଅନ୍ୟ ଶିଷ୍ୟମାନେ ହୋଇଣ ଲଜ୍ଜିତ
ଗୁରୁ ପାଦତଳେ ପଡ଼ି,
ବୋଇଲେ କଲ୍ୟାଣ କେହ୍ନେ ଏ ଉତ୍ତର
ଦେଲା ଦିନେ ନ ପଢ଼ି ।
ଗୁରୁ ବୋଇଲେ ସେ ଏକମାତ୍ର ଶିଷ୍ୟ
ଶାସ୍ତ୍ରରୁ ଯାହା ପଢ଼ଇ,
ତାହାକୁ ଅକ୍ଷରେ ଅକ୍ଷରେ ଜୀବନେ
ସଦା ପାଳନ କରଇ ।
ପ୍ରତିଦିନ ଜଳ ଆଣିବାର ସେବା
ଭଗବାନଙ୍କର ଭାବି,
କରୁଅଛି ସିଏ ପୂର୍ଣ୍ଣ ସମର୍ପଣେ
ସେ ତା' ସଫଳତା ଚାବି ।

ଶାସ୍ତ୍ର ଜ୍ଞାନ ନୁହେଁ ଯଥେଷ୍ଟ ଜୀବନେ
କରାଏ ସିଏ ଗର୍ବିତ,
ବିଭୁ ପ୍ରେମ ସହ ସେବା ଯେ କରଇ
ପ୍ରଭୁ ଥା'ନ୍ତି ତା' ସହିତ ।
କର୍ମକୁ ଭାବଇ ତା'ର ଭଗବାନ
ଈଶ୍ୱର ତା'ରେ ସଦୟ,
ଗୁରୁ ବାକ୍ୟ ତା'ର ମନ୍ତ୍ର ଯାହା ପାଇଁ
ଜ୍ଞାନ ତା ହୃଦୁ ଉଦୟ ।

# ଶିବାଜୀ ଓ ଗୁରୁ ରାମଦାସ

ଥିଲେ ଛତ୍ରପତି ଶିବାଜୀ ସମର୍ଥ
ରାମଦାସଙ୍କର ଭକ୍ତ,
ଗୁରୁ ତାଙ୍କୁ ଅତି ଭଲ ପାଉଥିଲେ
ଥିଲେ ଯେଣୁ ସେ ବିଶ୍ୱସ୍ତ ।
ଗୁରୁଙ୍କର ଭଲ ପାଇବାର ଦେଖି
ହୋଇ ଶିଷ୍ୟେ ଈର୍ଷାନ୍ୱିତ,
ପରସ୍ପର ମଧ୍ୟେ ଲୁଚି ଲୁଚି ହେଲେ
ସର୍ବେ ଆଲୋଚନାରତ ।
କୁହା କୁହି ହେଲେ ଶିବାଜୀ ଦେଶର
ରାଜପଣରେ ଥିବାରୁ,
ଅନ୍ୟାନ୍ୟ ଶିଷ୍ୟଙ୍କ ଠାରୁ ବେଶି ଭଲ
ପାଉଛନ୍ତି ତାଙ୍କୁ ଗୁରୁ ।
ଶିଷ୍ୟଙ୍କର ଚିନ୍ତା ଜାଣି ପାରି ଗୁରୁ
ମନେ ମନେ କଲେ ଚିନ୍ତା,
ଭୁଲ ବୁଝାମଣା ହଟେଇବେ ନିଶ୍ଚେ
କାଟିବେ ଅଡୁଆ ସୂତା ।
ଯୋଜନା ଗୋଟିଏ ମନ ମଧ୍ୟେ ଫାନ୍ଦି
ବୋଇଲେ ଜଙ୍ଗଲେ ଯିବା,
ପ୍ରାକୃତିକ ପରି- ବେଶେ କିଛି କ୍ଷଣ
ଆନନ୍ଦରେ କଟାଇବା ।
ସମସ୍ତ ଶିଷ୍ୟଙ୍କୁ ସାତେ ଧରି ଗୁରୁ
ଜଙ୍ଗଲକୁ ଗଲେ ଚଳି,
ବୁଲୁ ବୁଲୁ କେବେ ପଥ ହୁଡ଼ିଗଲେ
ପାରିଲେନି କେହି କଳି ।

ପେଟରେ ଯନ୍ତ୍ରଣା ଅତିଶୟ ଗୁରୁ
ଅନୁଭବି ଏ କାଳରେ,
ଗୁମ୍ଫାଟିଏ ମଧ୍ୟେ ଶୋଇ ଉଚ୍ଚସ୍ୱରେ
ଛାଡ଼ିଲେ ରଡ଼ି କଷ୍ଟରେ ।
ଶିଷ୍ୟ ଗଣ ଏହି ଅବସ୍ଥାରେ ଦେଖି
ସାନ୍ତ୍ୱନା ବସି ଦିଅନ୍ତି,
କି କରିବେ ବୋଲି ତାହାର ନିର୍ଣ୍ଣୟ
କେହି ନେଇ ନ ପାରନ୍ତି ।
ପଚାରିଲେ ଶିଷ୍ୟେ କି କରିବୁ କୁହ
ଉପଶମ ଯନ୍ତ୍ରଣାର,
ହୋଇବ କିପରି ବତାଅ ବୃତାନ୍ତ
ଶୀଘ୍ର ହେ ଗୁରୁ ତାହାର ।
ଗୁରୁ ବତାଇଲେ ଯେଉଁ ଉପଶମ
ଶୁଣି ଶିଷ୍ୟ ପରସ୍ପର,
ଚହାଁ ଚହିଁ ହେଲେ ଆଗେ ବଢ଼ିବାକୁ
ନ ଥିଲା ସାହସ କା'ର ।
ଏହି ସମୟରେ ଗୁରୁ ଦରଶନେ
ଆଶାୟୀ ହୋଇ ଶିବାଜୀ,
ଦୁର୍ଗରୁ ବାହାରି ଜଙ୍ଗଲରେ ଆସି
ପହଁଚିଲେ ଚଢ଼ି ବାଜୀ ।
ଖୋଜି ଖୋଜି ଆସି ଜଙ୍ଗଲ ମଧ୍ୟରେ
କ୍ରନ୍ଦନ ଶବଦ ଶୁଣି,
ନିକଟକୁ ଆସି ଅଜଣା ସେ ସ୍ୱର
ଗୁମ୍ଫାରୁ ଆସୁଛି ଜାଣି ।

ଭିତରେ ପ୍ରବେଶି ଦେଖିଲେ ସମର୍ଥ
ହେଉଛନ୍ତି ଛଟପଟ,
ପଚାରିଲେ ଦୁଇ ହାତ ଯୋଡ଼ି କୁହ
କାରଣ ମୋତେ ଝଅଟ ।
ସମର୍ଥ ବୋଇଲେ ପେଟରେ ଗଭୀର
ଯନ୍ତ୍ରଣା ହେଉଛି ମୋର,
ଶୀବାଜୀ ପୁଛିଲେ କୁହ ଶୀଘ୍ର ମୋତେ
ଏ ରୋଗର ପ୍ରତିକାର ।
ଏହାର ଔଷଧ କେଉଁଠି ମିଳିବ
ଘେନି ଆସିବି ତତ୍କ୍ଷଣ
ଗୁରୁ ବତାଇଲେ ଏ ବିରଳ ରୋଗ
ପ୍ରତିକାର ତା' କଠିନ ।
ଏକ ମାତ୍ର ଅଛି ପ୍ରତିକାର କିନ୍ତୁ
କଠିନ ତାକୁ ପାଇବା,
ଶିବାଜୀ ବୋଇଲେ ଯେତେ କଷ୍ଟ ହେଉ
କୁହ ସେ କାର୍ଯ୍ୟ କରିବା ।
ଯେତେ ବେଳ ଯାଏଁ ଆପଣଙ୍କ କଷ୍ଟ
ଉପଶମ ହୋଇ ନାହିଁ,
ବିଶ୍ରାମ କରିବା ମୋ ପକ୍ଷେ ହେ ଗୁରୁ
ସମ୍ଭବ ହୋଇବ ନାହିଁ ।
ଅତି କଷ୍ଟେ ଗୁରୁ କହିଲେ ଶେଷରେ
ସତେଜ ବାଘୁଣୀ କ୍ଷୀର,
ଏ ରୋଗ ଔଷଧ ସେଇଥିରେ ମାତ୍ର
ହେବ ୟାର ଉପଚାର ।

କମଣ୍ଡଳୁ ଧରି        ବିଳମ୍ବ ନ କରି
କରି ପ୍ରଣାମ ଗୁରୁଙ୍କୁ,
ବାଘୁଣୀ ସନ୍ଧାନେ        ଚଳିଲେ ଶିବାଜୀ
ସଦ୍ୟ କ୍ଷୀର ଆଣିବାକୁ ।
କିଛି କ୍ଷଣ ମଧ୍ୟେ        ଦେଖିଲେ ବନରେ
ଦୁଇଗୋଟି ବାଘ ଛୁଆ,
ଭାବିଲେ ନିଶ୍ଚିତ        ନିକଟରେ ଅଛି
ଏହି ଦୁହିଁଙ୍କର ମାଆ ।
ମୂହୂର୍ତ୍ତକ ମଧ୍ୟେ        ମାଆ ବାଘୁଣୀଟି
ଦେଖାଗଲା ତାଙ୍କ ପାଶେ,
ଶିବାଜୀ ତାହାର        ପାଶକୁ ଚଳିଲେ
କ୍ଷୀର ଆଣିବାର ଆଶେ ।
ଛୁଆଙ୍କ ନିକଟେ        ମଣିଷଟେ ଦେଖି
ଝପଟି ଆସି ବାଘୁଣୀ,
ଗର୍ଜନ ଛାଡ଼ିଲା        ସତେ ଯେପରି କି
ଖାଇ ଯିବ ଝୁଣି ଝୁଣି ।
ବାଘୁଣୀ ସହିତ        ଲଢ଼ିବା ସାହସ
ଥାଇ ବି ଶିବାଜୀଙ୍କର,
ହାତ ଯୋଡ଼ି ତାହା        ସମ୍ମୁଖେ ବିନମ୍ରେରେ
ଧିରେ କଲେ ନମସ୍କାର ।
ବୋଇଲେ ହେ ମାତ        ତୁମର ଅଥବା
ତୁମ ଛୁଆଙ୍କ ଅହିତ,
କରିବା ନିମନ୍ତେ        ଏହି ସ୍ଥାନେ ମୁହିଁ
ହୋଇ ନାହିଁ ଉପଗତ ।

ମୋ ଗୁରୁ ଯନ୍ତ୍ରଣା   ତାଡ଼ନେ ମରଣ
ମୁଖରେ ପଡ଼ି ଅଛନ୍ତି,
ତୁମ କ୍ଷୀର ପାନ   କରିଲେ ସୁସ୍ଥତା
ହୋଇବ ତାଙ୍କର ପ୍ରାପ୍ତି ।
ଦୟାଗରି ମୋତେ   ଅନୁଗ୍ରହ କର
ଦିଅ ସୁଯୋଗ ନେବାକୁ,
କରୁଣା କରିଲେ   ଗୁରୁ ଦେବେ ଦେଇ
ଫେରିବି ତୁମ୍ଭ ପାଖକୁ ।
ଏହା ପରେ ତୁମ୍ଭେ   ଚାହିଁଲେ ଅଧମେ
କରି ପାରିବ ଭୋଜନ,
ଏହା କହି ହସ୍ତ   ପୃଷ୍ଠରେ ତାଙ୍କର
କଲେ ଧିରେ ସଂଚାଳନ ।
ପ୍ରେମ ଆବେଶରେ   ଆସିଲା ବାଘୁଣୀ
ବନ୍ଦ କଲା ତା' ଗର୍ଜନ,
ବିଲେଇ ପରାୟେ   ଶିବାଜୀଙ୍କ ପଦ
ଦ୍ୱୟ କରିଲା ଲେହନ ।
ପ୍ରେମ ଦ୍ୱାରା ବଶ   ହେଲା ମହାବଳ
ଯାହା ହୁଏ ନାହିଁ ବଳେ,
ପ୍ରେମ ସାର ବୋଲି   ପ୍ରମାଣିତ ହେଲା
ପୁଣି ଏହି ରସାତଳେ ।
ସୁଯୋଗ ପାଇବା   ପରେ ଛତ୍ରପତି
କ୍ଷୀର କରିଲେ ଦୋହନ,
ବାଘୁଣୀକୁ ନମି   ପହଁଚିଲେ ଆସି
ଗୁରୁଦେବ ସନ୍ନିଧାନ ।

କ୍ଷୀର କମଣ୍ଡଲୁ ଗୁରୁଙ୍କ ଆଗରେ
ରଖି କରିଲେ ପ୍ରଣାମ,
ସମର୍ଥ କହିଲେ ଧନ୍ୟ ଗୁରୁ ଭକ୍ତି
ପ୍ରଶଂସ୍ୟ ସାହସ ତୁମ ।
ଯେଉଁ ଗୁରୁଙ୍କର ପାଶେ ତୁମପରି
ନିଷ୍ଠାପର ଗୁରୁଭକ୍ତ,
ଶିଷ୍ୟ ରହିଛନ୍ତି ସୌଭାଗ୍ୟ ବଳରେ
ନିସ୍ୱାର୍ଥପର ବିଶ୍ୱସ୍ତ ।
ଯନ୍ତ୍ରଣାର ଏତେ ସାହସ ଅଛି କି
ଦୀର୍ଘ ସମୟ ପର୍ଯ୍ୟନ୍ତ,
କଷ୍ଟ ସିଏ ଦେବ ସେପରି ଗୁରୁଙ୍କୁ
କରି ପାରିବ ତା' ଅନ୍ତ ।
ଶିରେ ହାତ ଥୋଇ ସମର୍ଥ ଅନ୍ୟାନ୍ୟ
ଶିଷ୍ୟଙ୍କୁ ବୋଇଲେ ଚାହିଁ,
ଆଶୀର୍ବାଦ ମୋର ଘେନ ହେ ଶିବାଜୀ
ଆଗାଅ ପଛେ ନ ଚାହିଁ ।
ଜୀବନରେ ଛୁଅଁ ସଫଳତା ଶୀର୍ଷ
ରଖି ଯାଅ ତୁମ ନାମ,
ସଦା ବେଳେ ମୋର ଆଶୀର୍ବାଦ ଶୁଭ
ଇଚ୍ଛା ଅଛି ପଛେ ତୁମ ।
ଶିବ ଶଙ୍କରଙ୍କ ପାଶେ କରେ ଅଳି
କରନ୍ତୁ ସେ ଅନୁଗ୍ରହ,
ଦୟା କ୍ଷମା କୃପା ଭରି ଦ୍ୟନ୍ତୁ ତୁମ
ହୃଦୟେ ଗୁଣ ସମୁହ ।
ଅନ୍ୟ ଈର୍ଷାଯୁକ୍ତ ଶିଷ୍ୟମାନେ ଏବେ
ବୁଝିଗଲେ କାହିଁପାଇଁ,
ଶିବାଜୀଙ୍କୁ ସ୍ନେହ ଅଧିକ କରନ୍ତି
ଅନ୍ୟଙ୍କୁ କରନ୍ତି ନାହିଁ ।

ଗୁରୁ ଯଦି ଜଣେ ନିର୍ଦ୍ଦିଷ୍ଟ ଶିଷ୍ୟକୁ
ପାଉଥାନ୍ତି ଅତି ଭଲ,
ସେହି ଶିଷ୍ୟ ନିଶ୍ଚେ ଯୋଗ୍ୟ ହୋଇଥିବ
ତତୁଲ୍ୟ ଥିବ ତା' ମୂଲ୍ୟ ।
ଗୁରୁଙ୍କ ବିଶେଷ ଅନୁଗ୍ରହ ପାଇଁ
ଅର୍ଜିଥିବ ସେ ଯୋଗ୍ୟତା,
ଅଯୋଗ୍ୟ କେବଳ ତା'ରେ କରେ ଈର୍ଷା
ସେହି ତା'ର ଦୁର୍ବଳତା ।
ନିଛକ ନିସର୍ତ୍ତ ନିସ୍ୱାର୍ଥ ଭାବରେ
ଗୁରୁଙ୍କୁ ଯେ ଭଲ ପାଏ,
ଅହେତୁକୀ ଗୁରୁ କୃପା ତାହା ପରେ
ଅହରହ ବର୍ଷୁଥାଏ ।
ଗୁରୁଙ୍କର ଦୃଷ୍ଟି ଆକର୍ଷଣ ଯୋଗ୍ୟ
କରି ଗଢ଼େ ଯେ ନିଜକୁ,
ଗୁରୁ ଅନୁକମ୍ପା ଅବାରିତ ରୂପେ
ଝରିଆସେ ତା' ପାଖକୁ ।
ସୂର୍ଯ୍ୟ ଅସମାନ କିରଣ ଦିଏନା
ଦିଏ ସଭିଙ୍କୁ ସମାନ
କେ କେତେ ଗ୍ରହଣ କରିବ ନିର୍ଭର
କରେ ଯେହ୍ନେ ଯା'ର ମନ ।
ଗୁରୁ ସେହିପରି ସବୁ ଶିଷ୍ୟ ପ୍ରତି
ସମଭାବାପନ୍ନ ହୋଇ,
ଶିକ୍ଷାର ପସରା ଖୋଲି ବସିଥା'ନ୍ତି
ଶିଷ୍ୟ କିଣେ ଭକ୍ତି ଦେଇ ।



# ଆଜ୍ଞାକାରୀ ଶିଷ୍ୟ ଅଙ୍ଗଦ

ନାନକଜୀ ଦିନେ ଶିଷ୍ୟଗଣେ ରାଇ
ବୋଇଲେ କର ନିର୍ମାଣ,
ସୁନ୍ଦର ପ୍ରକାରେ ବେଦୀଟିଏ ମିଶି
ଲଗାଇ ଚୈତନ୍ୟ ମନ ।୧ ।
ଗୁରୁଙ୍କ ଆଦେଶ ଶିରୋଧାର୍ଯ୍ୟ କରି
ଅନୁଗାମୀ ଶିଷ୍ୟଗଣ,
ଗଢ଼ିଲେ ଗୋଟିଏ ଶୋଭାମୟ ବେଦୀ
ଖୁସି ଦେଖି ଗୁରୁ ମନ ।୨ ।
ସାଙ୍ଗେ ସାଙ୍ଗେ ଗୁରୁ ଭାଙ୍ଗ ବେଦୀ ବୋଲି
ପ୍ରଦାନ କଲେ ଆଦେଶ,
ଶିଷ୍ୟଗଣ କ୍ଷଣେ ବିଳମ୍ବ ନ କରି
ପାଳିଲେ ଗୁରୁ ନିର୍ଦ୍ଦେଶ ।୩ ।
ବାରମ୍ବାର ଗୁରୁ ବେଦୀ ଗଢ଼ିବାକୁ
ପୁଣି ଭାଙ୍ଗିବା ନିମନ୍ତେ,
ନିର୍ଦ୍ଦେଶ ଦିଅନ୍ତି ଶିଷ୍ୟେ ବି ଗଢ଼ନ୍ତି
ଭାଙ୍ଗୁ ଥାଆନ୍ତି ନିଶ୍ଚିନ୍ତେ ।୪ ।
ଭଙ୍ଗା ଗଢ଼ା କାର୍ଯ୍ୟ ଗୁରୁ ପୁତ୍ର ଦେଖି
ମନରେ ବହିଲେ କ୍ରୋଧ,
ଶିଷ୍ୟ ଗଣେ ଆସି କହିଲେ ଯେତକ
ଅଛ ସବୁ କି ନିର୍ବୋଧ ।୫ ।
ପିତା ମୋର ଯେଉଁ ପ୍ରକାରେ ନିର୍ଦ୍ଦେଶ
ଦେଉ ଅଛନ୍ତି ତୁମକୁ,
ସେ ଆଦେଶ ତୁମ ମନରେ ଉତ୍ପନ୍ନ
କରୁ ନାହିଁ କି କ୍ରୋଧକୁ ।୬ ।

ଶିଷ୍ୟଙ୍କ ମଧ୍ୟରୁ ଲେହେନା କହିଲେ
ଶୁଣ ହେ ଭ୍ରାତା ଆମର,
ଗୁରୁଙ୍କ ନିର୍ଦ୍ଦେଶ ପାଳିବା ସାଧନା
ତହିଁ ଆମ ଅଧିକାର ।୭ ।
ଗୁରୁଙ୍କ ନିର୍ଦ୍ଦେଶ ବିରୁଦ୍ଧରେ ପ୍ରଶ୍ନ
କରିବା କଥା ମନରେ,
ଚିନ୍ତିବାକୁ ପାପ ମନେକରୁ ଆମେ
ଭାବେ ଯେ ପାପୀ ସଂସାରେ ।୮ ।
କରେ ଗୁରୁ ଆଜ୍ଞା ଅବମାନନା ଯେ
ରୈରବ ନରକେ ପଡ଼େ,
ସାତ ଜନମର ପୁଣ୍ୟ ନଷ୍ଟ ହୋଇ
ପାପ ଭାର ତା'ର ବଢ଼େ ।୯ ।
ଅନ୍ୟ ଏକ ଦିନ ଗୁରୁ ଜ୍ୟେଷ୍ଠ ପୁତ୍ରେ
ବୋଇଲେ ଶ୍ରୀଚାନ୍ଦ ଶୁଣ,
ଗୋରୁଙ୍କ ଗୁହାଳ ସଫା ହୋଇ ନାହିଁ
ସଫା କର ତା' ଚଟାଣ ।୧୦ ।
ଅନ୍ୟ କାର୍ଯ୍ୟେ ବ୍ୟସ୍ତ ରହିବା କାରଣୁ
ସେ କାର୍ଯ୍ୟ ପାରିନି ହୋଇ,
କେବଳ ଏତିକି ସେବା କର ତୁମେ
ଶୀଘ୍ର ସେ ସ୍ଥାନକୁ ଯାଇ ।୧୧ ।
ଶ୍ରୀଚାନ୍ଦ ସେକାଳେ ସଫା ପରିଚ୍ଛଦ,
ପିନ୍ଧି ସ୍ନାନ ଶୌଚ ହୋଇ,
ଯାଉଥିଲେ ଦେବ ମନ୍ଦିରକୁ ବିଭୁ
ଚରଣେ ପୂଜିବା ପାଇଁ ।୧୨ ।

ଭାବିଲେ ମନରେ ଗୋରୁ ଗୁହାଳକୁ
ଯିବି ଯଦି ସଫା କରି,
ସଫା ପରିଚ୍ଛଦ ନିଶ୍ଚିତ ହୋଇବ
ଅପରିଷ୍କାର ମୋହରି ।୧୩।
ସଫା ଉପରାନ୍ତେ ମନ୍ଦିରେ ଯିବାକୁ
ହେବ ଶୌଚ ସ୍ନାନ ସାରି,
ଏତେ ଝିନଝଟରେ ନ ପଶି ବୋଇଲେ
ମନ୍ଦିରେ ଅଛି ବାହାରି ।୧୪।
ହେ ପିତା ! ମନ୍ଦିରେ ଯିବାକୁ ପଡ଼ିବ
ହୋଇ କରି ଶୁଚିମନ୍ତ,
ଗୁହାଳ ସଫେଇ ପାରିବିନି କରି
କହି ଚଳିଲେ ତୁରନ୍ତ ।୧୫।
ନିକଟରେ ଶିଷ୍ୟ ଲେହନା ବି ଥିଲେ
ସ୍ନାନ ଶୌଚ କରି ଶେଷ,
ଗୋରୁଙ୍କ ଗୁହାଳ ସଫା କରିବାକୁ
ପାଉଣୁ ଗୁରୁ ନିର୍ଦ୍ଦେଶ ।୧୬।
ଅବିଳମ୍ବେ ସଫା କରିଲେ ଗୁହାଳ
ତାପରେ କରିଲେ ସ୍ନାନ,
ତପ୍ରରେ ଚଳିଲେ ମନ୍ଦିରକୁ ନୂଆ
ବସ୍ତ୍ର କରି ପରିଧାନ ।୧୭।
ଶିଖଙ୍କର ଏକ ସମ୍ମିଳନୀ ଗୁରୁ
ଡକାଇଲେ ପରଦିନ,
ସେ ସମ୍ମିଳନୀରେ ଲେହନାଙ୍କ ନାମ
କରିଲେ ପରିବର୍ତ୍ତନ ।୧୮।

ଲେହନାଙ୍କ ନାମ ଅଙ୍ଗଦ ଦେବରେ
ବଦଳାଇ ଗୁରୁ ଦେବ,
କଲେ ଘୋଷଣା ମୋ ଉତ୍ତରାଧିକାରୀ
ହୋଇବ ଅଙ୍ଗଦ ଦେବ ।୧୯ ।
ଗୁରୁଆଜ୍ଞା ଯିଏ ନିର୍ବିବାଦେ ପାଳେ
ନ ହୋଇ ବି ସମୀଚୀନ,
ଗୁରୁ ଆଜ୍ଞା ପାଇଁ ବାରମ୍ବାର ବିନା
ଦ୍ୱିଧାରେ କରେ ଯେ ସ୍ନାନ ।୨୦ ।
ଗୁରୁ ପଦ ପାଇଁ ତାଠୁଁ ଉପଯୁକ୍ତ
କେ ନୁହେଁ ମର୍ତ୍ତ୍ୟ ଭୂବନେ,
ଏହା କହି ଗୁରୁ ସସ୍ନେହେ ଅଙ୍ଗଦେ
ବସାଇଲେ ସିଂହାସନେ ।୨୧ ।
ଆନ୍ତରିକତାର ସହ ଗୁରୁ ଆଜ୍ଞା
ନିଃସ୍ୱାର୍ଥ ପର ଭାବରେ,
ଯେ ଶିଷ୍ୟ ପାଳନ କରେ ସଫଳତା
ପ୍ରାପ୍ତ କରେ ସେ ସଂସାରେ ।୨୨ ।





# ସ୍ୱାମୀ ସମର୍ଥ ଓ ଦରିଦ୍ର ବ୍ରାହ୍ମଣ ଶିଷ୍ୟ



ଶ୍ରୀଦତ୍ତଗୁରୁଙ୍କ ତୃତୀୟାବତାର
ସମର୍ଥ ସ୍ୱାମୀ ସମର୍ଥ,
ଉବାଡ଼ିରୁ ଆସି କୁରଭ ପୁରରେ
ରହିଲେ ଜାଣି ତା' ତୀର୍ଥ ।
ପଞ୍ଚ ଗଂଗା ସହ କୃଷ୍ଣା ସରିତାର
ସେଇଠି ମିଳନ ସ୍ଥଳ,
ଦକ୍ଷିଣ ଭାରତ କାଶୀ ନାମେ ଖ୍ୟାତ
ପବିତ୍ର ପୁଣ୍ୟ ନିର୍ମଳ ।
ପ୍ରତିଦିନ ଗୁରୁ ଅପରାହ୍ନ ବେଳେ
ଅମରପୁର ଗାଆଁକୁ,
ଯାଆନ୍ତି ସଂଗ୍ରହ କରିବାକୁ ଭିକ୍ଷା
ଆଶିଷ ଭକ୍ତେ ଦେବାକୁ ।
ସେ ଗ୍ରାମରେ ଜଣେ ଗରୀବ ବ୍ରାହ୍ମଣ
ଭିକ୍ଷା ବୃତ୍ତିରେ ଯେ ବଞ୍ଚେ,
ଗୁରୁଙ୍କ ଚରଣେ ଅଚଳାଚଳ ତା'
ଭକ୍ତି ବିରଳ ସଂସାରେ ।
ଚାହିଁ ବସିଥାଏ କେଉଁ ଦିନ ଗୁରୁ
ତା' ଗୃହରେ ପାଦ ଦେବେ,
କୃପା କରି ଗୁରୁ ଜନ୍ମ ଜନ୍ମ ପାପ
ଧୋଇ ମୁକତ କରିବେ ।
ଭାଗ୍ୟ ଅଭାବରୁ ଭିକ୍ଷାବୃତ୍ତି କରି
ଜୀବନ ସିନା ବିତାନ୍ତି,
ଗୃହେ ଆଗମନ କରିବା ଅତିଥି
ଈଶ୍ୱର ସମ ଦେଖନ୍ତି ।

ଯଥାସାଧ ତାଙ୍କ        ପୂଜା ଅରଚନା
କରନ୍ତି ଭାବି ଦେବତା,
ଯାଥାସାଧ ଅନ୍ନ        ଭୋଜନ କରାନ୍ତି
ନ କରି ନିଜର ଚିନ୍ତା ।
ବ୍ରାହ୍ମଣଙ୍କ ପତ୍ନୀ        ଅତିବୁଦ୍ଧିମତୀ
ଲକ୍ଷ୍ମୀ ସ୍ୱରୂପା ସାକ୍ଷାତ,
କୌଣସି ଅତିଥି        ଖାଲି ନ ଫେରନ୍ତି
ହୋଇଥିଲେ ଦୂରାଗତ ।
ଈଶ୍ୱରଙ୍କ ନାମ        ଭଜନ କୀର୍ତ୍ତନ
କରି ବିତାନ୍ତି ଜୀବନ,
ଗରୀବ ହୋଇବି        ଦେବ ବ୍ରାହ୍ମଣଙ୍କ
ସେବାରେ ସର୍ବଦା ମନ ।
ଦିନେ ଗୁରୁ ଭିକ୍ଷା        ମାଗିବା ନିମନ୍ତେ
ଆସି ପହଞ୍ଚିଲେ ଦ୍ୱାରେ,
ବ୍ରାହ୍ମଣ ଯୋଗକୁ        ନଥିଲେ କେବଳ
ପତ୍ନୀ ଥିଲେ ନିଜ ଘରେ ।
ଭିକ୍ଷା କରିବାକୁ        ଯାଇଥିଲେ ସ୍ୱାମୀ
ଜାଣି ବ୍ରାହ୍ମଣୀ ବହନ,
ଗୃହେ ଡାକିନେଇ        ବସାଇଲେ ପାଦ
ଧୋଇ ପକାଇ ଆସନ ।
ତାହାପରେ ମନ        ହେଲା ଚିନ୍ତାଗ୍ରସ୍ତ
ଗୁରୁଙ୍କୁ କି ଦେବେ ବୋଲି,
ଭିକ୍ଷାଦ୍ରବ୍ୟ ସବୁ        ସରିଯାଇଥିଲା
ଖାଲିଥିଲା ସବୁ ଡ଼ୋଲି ।

ଦିଶିଲା ଗୋଟିଏ ବାଟ ବ୍ୟସ୍ତ ହୋଇ
ଦୀର୍ଘ କାଳ ଚିନ୍ତା ପରେ,
ଘର ପ୍ରାଙ୍ଗଣର ସଜନା ଗଛଟି
ଥିଲା ଭରତି ଛୁଇଁରେ ।
ବ୍ରାହ୍ମଣଙ୍କ ପତ୍ନୀ ଅଳ୍ପ କିଛି ତୋଳି
ରାନ୍ଧି ଗୁରୁଙ୍କ ପାଶରେ,
ସସ୍ନେହେ ପରଷି ନିକଟରେ ବସି
ପଙ୍ଖା କରିଲେ ଖୁସିରେ ।
ଗୁରୁ ଖାଇ ହେଲେ ଅତି ଆନନ୍ଦିତ
ଜାଣି ଦୁଃଖେ ଅଛି ଶିଷ୍ୟ,
ଆଶୀର୍ବାଦ କଲେ ଆଜି ଠାରୁ ତୁମ
ଦାରିଦ୍ର୍ୟ ହୋଇଲା ଶେଷ ।
ଘର ପ୍ରାଙ୍ଗଣର ସଜନା ଗଛକୁ
ମୂଳୁ ତତକ୍ଷଣେ ଗୁରୁ,
କାଟି ପକାଇଲେ ବ୍ରାହ୍ମଣଙ୍କ ପତ୍ନୀ
କିଛି ବୁଝିବା ପୂର୍ବରୁ ।
ଏକଇ ସାହାରା ଗଛଟିକୁ କଟା
ଅବସ୍ଥାରେ ନେତ୍ରେ ଦେଖି,
ଏତାଦୃଶ୍ୟ କାର୍ଯ୍ୟେ ବ୍ରାହ୍ମଣଙ୍କ ପତ୍ନୀ
ହେଲେ ଅତିଶୟ ଦୁଃଖି ।
କଇଁ କଇଁ କାନ୍ଦି ଭାଗ୍ୟକୁ ନିନ୍ଦିଲେ
ଭଲ କଲଇ ଗୁରୁ ସେବା,
ଏମନ୍ତ ସ୍ଥାନରେ ବିଧି ଠିଆକଲା
ତାର କି ଉପମା ଦେବା ।

ଏ ସମୟେ ଆସି ଉପସ୍ଥିତ ହେଲେ
ବ୍ରାହ୍ମଣ ଗୃହରେ ଆସି,
ପତ୍ନୀ ସବିସ୍ତାରେ ସମସ୍ତ ଘଟଣା
ଜଣାଇଲେ ନୋହି ଖୁସି ।
ବ୍ରାହ୍ମଣ ଗୁରୁଙ୍କ କାରନାମା ଦେଖି
ବୋଇଲେ ହୁଅନା ବ୍ୟସ୍ତ,
ଗୁରୁ ଆଶୀର୍ବାଦ ଉପରେ ରଖିବା
ଆମେ ବିଶ୍ୱାସ ନିଶ୍ଚିତ ।
ସ୍ୱାମୀ ସମର୍ଥଙ୍କ ହାତେ କଟା ଯାଇ
ସରିଛି ସଜନା ଗଛ,
ଚାଲ ଏବେ ମୂଳୁ ତାଡ଼ି ସେ ସ୍ଥାନକୁ
କରିଦେବା ଆମେ ସ୍ୱଚ୍ଛ ।
ଶାବଳ କୋଡ଼ିରେ ଖୋଳି ଚେର ହାଣି
ତାଡ଼ି ଦେଲେ ଯେବେ ମୂଳ,
ସ୍ୱର୍ଣ୍ଣ ଅଳଙ୍କାରେ ପରିପୂର୍ଣ୍ଣ ଏକ
ହାଣ୍ଡି ଦେଖିଲେ ତା ତଳ ।
ବ୍ରାହ୍ମଣ ଦମ୍ପତ୍ତି ହେଲେ ବହୁ ଖୁସି
ପାଇ ଗୁରୁ ଆଶୀର୍ବାଦ,
ଜାଣିଲେ କି ଲାଭ ମିଳେ ଜୀବନରେ
ପୂଜା କଲେ ଗୁରୁ ପଦ ।
ଶୁଦ୍ଧ ମନେ ଯିଏ ଗୁରୁ ଚରଣରେ
ନିତିଦିନ ପୂଜାକରେ,
ଅଯାଚିତ ଭାବେ ଝରିପଡ଼େ ଗୁରୁ
ଆଶୀର୍ବାଦ ତା' ଉପରେ ।



# ସୁରଦାସ ଏବଂ ଗୁରୁ ବଲ୍ଲଭାଚାର୍ଯ୍ୟ

ବହୁଦିନ ତଳେ ସୁରଦାସ ନାମେ
ଈଶ୍ୱର ସନ୍ଧାନୀ ଜଣେ,
ବାସ କରୁଥିଲେ ଉତ୍ତର ଭାରତେ
ମନ ଈଶ୍ୱର ଚରଣେ ।
ଈଶ୍ୱର ସମ୍ବନ୍ଧେ ଗ୍ରନ୍ଥ ଅଧ୍ୟୟନ
ଈଶ୍ୱର ଅନୁସନ୍ଧାନ,
କରୁଥିଲେ ପ୍ରଭୁ ନାମ କୀରିତନ
ପୂଜା ଅର୍ଚ୍ଚନ ବନ୍ଦନ ।
ତଥାପି ତାଙ୍କର ହୃଦୟ ବୁଝେନା
ମାନୁ ନ ଥିଲା ମନଟି,
କେଉଁ ପରକାର ଭଗବାନଙ୍କର
ନିକଟତର ହେବେଟି ।
ଅଧ୍ୟାତ୍ମିକ ରାସ୍ତା ଆଧ୍ୟାତ୍ମ ଅଭ୍ୟାସ
କିପରି କରିବି ବୋଲି,
ବଲ୍ଲଭାଚାର୍ଯ୍ୟଙ୍କ ପାଶେ ଏକଦିନ
ପଚାରିଲେ ଯାଇ ଚାଲି ।
ବୋଇଲେ ଗ୍ରହଣ କରି ଶିଷ୍ୟ ରୂପେ
ବତାଇ ଦିଅନ୍ତୁ ପଥ,
ନାନା ମୁନିଙ୍କର ନାନା ମତ ଶୁଣି
ଘୁରି ଯାଉଛି ମୋ ମାଥ ।
ସୁରଦାସ ଥିଲେ ପ୍ରଚଣ୍ଡ କ୍ରୋଧର
ଦାସ ଜାଣିଥିଲେ ଗୁରୁ,
ଚିନ୍ତା କଲେ ଏହା ସାଧନା ପଥରେ
ଅନ୍ତରାୟ ପ୍ରଥମରୁ ।

ଗୁରୁ ଆଧ୍ୟାତ୍ମିକ ସାଧନାର ଶିକ୍ଷା
କରିବା ପୂର୍ବରୁ ପ୍ରଦାନ,
ପ୍ରଥମେ ପ୍ରସ୍ତୁତ କରିବେ ତାହାଙ୍କୁ
ନିଷ୍ପତ୍ତି କରିଲେ ମନ ।
ବିନା ପ୍ରସ୍ତୁତିରେ କାର୍ଯ୍ୟ କଲେ କେବେ
ସଫଳତା ମିଳେ ନାହିଁ,
ଅନ୍ଧାର ଘରରେ ବାଡ଼ି ବୁଲେଇବା
ପ୍ରାୟ କାର୍ଯ୍ୟ ହୁଏ ସେହି ।
ଜୀବନର ଚାରି ଆଶ୍ରମ ମଧ୍ୟରୁ
ବ୍ରହ୍ମଚର୍ଯ୍ୟ ବାନପ୍ରସ୍ଥ,
ଅନ୍ୟ ଦୁଇଟିର ପ୍ରସ୍ତୁତି ଆଶ୍ରମ
ସନ୍ନ୍ୟାସ ସହ ଗାର୍ହସ୍ଥ୍ୟ ।
ବ୍ରହ୍ମଚର୍ଯ୍ୟାଶ୍ରମେ ପ୍ରସ୍ତୁତି ଜୀବନେ
ଯିଏ କରିଛି ଉତ୍ତମ,
ଇତସ୍ତତ ନୋହି ସୁରୁଖୁରେ ଚାଲେ
ତା'ର ଗାର୍ହସ୍ଥ୍ୟ ଆଶ୍ରମ ।
ବାନପ୍ରସ୍ଥାଶ୍ରମ ଷାଠିଏ ବରଷ
ପରେ ଯେ ପାଳନ କରେ,
ସନ୍ନ୍ୟାସ ଆଶ୍ରମେ ବିଭୁ ଦରଶନ
ତାକୁ ପ୍ରାପ୍ତ ହୋଇ ପାରେ ।
ପ୍ରଥମେ ପ୍ରସ୍ତୁତ କରିବାକୁ ନେଇ
ନିଷ୍ପତ୍ତି ବଲ୍ଲଭାଚାର୍ଯ୍ୟ,
ବୋଇଲେ ଶୁଣ ମୋ କଥା ସୁରଦାସ
କର ତୁମେ ଏକ କାର୍ଯ୍ୟ ।

ଦୈନନ୍ଦିନ କାର୍ଯ୍ୟ କରିବା ସମୟେ
ମାତ୍ର ଏକମାସ ପାଇଁ,
ଈଶ୍ୱରଙ୍କ ନାମ ଜପକର ଲଗ୍ନେ
ତା'ପରେ ଆସ ଗାଧୋଇ ।
ଶୁଚୀମନ୍ତ ହୋଇ ଆସିଲେ ମୋ ପାଶେ
ପିନ୍ଧି ସଫା ଶ୍ୱେତ ବସ୍ତ୍ର,
ତାହା ପରେ ନିଶ୍ଚେ ପ୍ରଦାନ କରିବି
ଶାସ୍ତ୍ର ମତରେ ଶିଷ୍ୟତ୍ୱ ।
ପର ଦିନଠାରୁ ଜପିଲେ ଯେପରି
ଥିଲା ଗୁରୁଙ୍କ ନିର୍ଦ୍ଦେଶ,
ଈଶ୍ୱରଙ୍କ ନାମ ଦୈନନ୍ଦିନ କାର୍ଯ୍ୟ
କଲାବେଳେ ସୁରଦାସ ।
ଏହିପରି ଭାବେ ଏକ ମାସ ଯେବେ
ଜପ କାର୍ଯ୍ୟ ହେଲା ପୂର୍ଣ୍ଣ,
ନଦୀରେ ଗାଧୋଇ ସଫା ବସ୍ତ୍ର ପିନ୍ଧି
ଚଳିଲେ ଆନନ୍ଦ ମନ ।
ଯାଉ ଯାଉ ଗୁରୁ ଆଶ୍ରମକୁ ପଥେ
ଥିଲା ଏକ ଝାଡୁଦାର,
ବେପରୁଆ ଭାବେ ଝାଡୁ କରି କଲା
ପୋଷାକ ଅପରିଷ୍କାର ।
ପ୍ରଚଣ୍ଡ କ୍ରୋଧିତ ହୋଇ ସୁରଦାସ
ବୋଇଲେ ରେ ବୁଦ୍ଧି ହୀନ,
କିକଲୁ ପୋଷାକ ଏକ ମାତ୍ର ମୋର
ପୁଣି କରିବି ସ୍ନାହାନ ।

ତୋ ଦୁର୍ବୁଦ୍ଧି ଯୋଗୁଁ ସମୟ ଅଯଥା
ହେଲା ଅପଚୟ ମୋର,
ଗୃହେ ଫେରି ଆସି ପୁଣି ସ୍ନାନ ଶୌଚ
ସାରି ଗଲେ ଗୁରୁ ଘର ।
ଝାଡୁଦାର ସହ ରାମଦାସଙ୍କର
ଯେତେ କଥୋପକଥନ,
ଗୁରୁ ଅନ୍ତରାଳେ ରହି ନିଭୃତରେ
କରୁ ଯେ ଥିଲେ ଶ୍ରବଣ ।
ସୁରଦାସ ଯେବେ ଗୁରୁ ଆଶ୍ରମରେ
ପହଞ୍ଚିଲେ ଶଶରୀରେ,
ଗୁରୁ ତାଙ୍କୁ ଦେଖି ହସି ହସି ଆସି
ପ୍ରକାଶିଲେ ସୁମଧୁରେ ।
ବୋଇଲେ ଆପଣ ଆଧ୍ୟାତ୍ମିକାଭ୍ୟାସ
ନିମନ୍ତେ ନୁହଁ ପ୍ରସ୍ତୁତ,
ଏଣୁ ଏକମାସ ପୁଣି କରି ଜପ
କର ମୋ ସାଥେ ସାକ୍ଷାତ ।
ଗୁରୁ ବଚନକୁ ସମ୍ମାନ ଜଣାଇ
ଏକମାସ ଜପ କରି,
ଆଶ୍ରମକୁ ଗଲା ସମୟେ ଘଟିଲା
ଘଟଣାଟି ପୂର୍ବପରି,
ଗୁରୁ ନିର୍ଦ୍ଦେଶରେ ତିନିମାସ ପରେ
ଗୁରୁଙ୍କୁ ଭେଟିବା ପାଇଁ,
ସୁରଦାସ ପଥେ ଗଲାବେଳେ ପୂର୍ବ
ଝାଡୁଦାର ଥିଲା ଚାହିଁ ।

ସୁରଦାସ କିଛି　　　　　କହିବା ପୂର୍ବରୁ
ଧାଇଁ ଆସି ପାଶେ ଚଣ୍ଡେ,
ଅଳିଆ ଝୁଡ଼ିରୁ　　　　　ସବୁତକ ନେଇ
ଢାଳି ଦେଲା ତାଙ୍କ ମୁଣ୍ଡେ ।
ଝାଡୁଦାର ହେଲା　　　　　ଆଶ୍ଚର୍ଯ୍ୟ ଚକିତ
ଦେଖି ତାଙ୍କ ବ୍ୟବହାର,
ବିରକ୍ତ ନ ହୋଇ　　　　　ଦୁଇ ହାତ ଯୋଡ଼ି
କଲେ ଯେବେ ନମସ୍କାର ।
ବୋଇଲେ ତୁମକୁ　　　　　ଶତ ଧନ୍ୟବାଦ
ତୁମେ ଦେଲ ଗୁରୁ ଦୀକ୍ଷା,
କ୍ରୋଧକୁ କିପରି　　　　　ନିୟନ୍ତ୍ରଣ କରି
ଦୂରେଇବି ଦେଲ ଶିକ୍ଷା ।
ଝାଡୁଦାର ତା'ର　　　　　ବାଟେ ଗଲା ଚାଲି
ଗୃହେ ଆସି ସୁରଦାସ,
ସ୍ନାନ ଶୌଚ ସାରି　　　　　ନବବସ୍ତ୍ର ପିନ୍ଧି
ଆଶ୍ରମେ କଲେ ପ୍ରବେଶ ।
ମନ ଶାନ୍ତ ଥିଲା　　　　　ଗୁରୁ ବସିଥିଲେ
ତାଙ୍କରି ବାଟକୁ ଚାହିଁ,
ପ୍ରସନ୍ନ ଚିତ୍ତରେ　　　　　ହସ୍ତ ରଖି ଶିରେ
ଗେଲ କଲେ ଥାପୁଡ଼ାଇ ।
ମାତା ଯେହ୍ନେ ପିଲା　　　　　ସଫଳ ହୋଇଲେ
ଥାପୁଡ଼ାଏ ପିଠି ତା'ର,
ଗୁରୁ ସେହିପରି　　　　　ଯୋଗ୍ୟ ଶିଷ୍ୟ ପାଇ
ଆନନ୍ଦେ ହେଲେ ବିଭୋର ।

ଶିଷ୍ୟ ରୂପେ ତାଙ୍କୁ          କରିଲେ ଗ୍ରହଣ
ବୋଇଲେ ଧନ୍ୟ ତୋ ଧୈର୍ଯ୍ୟ,
ଆଧ୍ୟାତ୍ମ୍ୟ ଜୀବନେ          ଉନ୍ନତି କରିବୁ
କହିଲେ ବଲ୍ଲଭାଚାର୍ଯ୍ୟ ।
ଆମେ ଯଦି ଆମ          ତ୍ରୁଟି ସୁଧାରିବା
ଆମମାନଙ୍କ ଜୀବନେ,
ସଫଳତା ସିଢ଼ି          ଚଢ଼ି ବଢ଼ିଯିବା
ମର୍ତ୍ତ୍ୟରୁ ଉଚ୍ଚ ଗଗନେ ।





# ରାମାନୁଜାଚାର୍ଯ୍ୟ ଓ ଗୁରୁ ଯାଦବ ପ୍ରକାଶ



ରାମାନୁଜାଚାର୍ଯ୍ୟ ବେଦୋପନିଷଦ
ଶିକ୍ଷା ଲାଭ ଆଶା ନେଇ,
ଯାଦବ ପ୍ରକାଶ ସ୍ୱାମୀ ନିକଟକୁ
କାଞ୍ଚିପୁରମକୁ ଯାଇ ।
ଶିଷ୍ୟତ୍ୱ ଗ୍ରହଣ କରି ଆନନ୍ଦରେ
କଲେ ଶାସ୍ତ୍ର ଅଧ୍ୟୟନ,
ଗୁରୁ ପଦେ ସେବା କଲେ ଅହର୍ନିଶ
ଦୃଢ଼େ ନିବେଶିଣ ମନ ।
ଧିରେ ରାମାନୁଜେ ଶିଖାଇଲେ ଗୁରୁ
ଭଗବତ ଅନୁଭୂତି,
କିପରି କରିବ ତାହାର ରହସ୍ୟ
ଦେଖି ତାଙ୍କ ଅନୁରକ୍ତି ।
ଚେତାବନୀ ଦେଲେ ଅନ୍ୟ କାହାରିକୁ
କହିବନି ଏ ରହସ୍ୟ,
କହିଲେ ହୃଦୟ ଶତଧା ବିଭକ୍ତ
ହେବ ଏ ନୁହେଁ ରହସ୍ୟ ।
ରାମାନୁଜ ଗୁରୁ ଚେତାବନୀ ଶୁଣି
ରହସ୍ୟ ଗୁରୁତ୍ୱ ଜାଣି,
ଏକ ଦେବାଳୟ ଉପରକୁ ଚଢ଼ି
ଉଚ୍ଚସ୍ୱରେ ଡାକି ଆଣି ।
ଗୁରୁଙ୍କ ପ୍ରଦତ୍ତ ଈଶ୍ୱରାନୁଭବ
କରିବାର ଦିବ୍ୟରାସ୍ତା,
ପ୍ରାଞ୍ଜଳ ଭାବରେ ବୁଝାଇ ଲୋକଙ୍କୁ
ଦାନ କରି କଲେ ଶସ୍ତା ।

ଅବଗତ ହୋଇ ଘଟଣା ସଂପର୍କେ
ଗୁରୁ ହେଲେ କ୍ରୋଧାନ୍ୱିତ,
ରାମାନୁଜେ ଡାକି ବିଭିନ୍ନ ପ୍ରକାରେ
ଭର୍ତ୍ସନା କଲେ ବହୁତ ।
ବୋଇଲେ ଗୁରୁଙ୍କ ଆଜ୍ଞାକୁ ନମାନି
ବଡ଼ ପାପ କରିଅଛ,
ମୋ ଅବମାନନା କରି ଆଧ୍ୟାତ୍ମିକ
ରହସ୍ୟ ଖୋଲି ଦେଇଛ ।
ଗୁରୁବାକ୍ୟ ହେଣ୍ଟି ବିରୁଦ୍ଧାଚରଣ
କରେ ଯେ ହୋଇ ଆଶ୍ରିତ,
ସେ ଅଧର୍ମ କାର୍ଯ୍ୟ ପ୍ରଭାବ କି ହେବ
ତୁମେ ରହିଛ କି ଜ୍ଞାତ ।
ରାମାନୁଜ ଗୁରୁ ଚରଣ ବନ୍ଦନ
ପୂର୍ବକ ଭଦ୍ର ଭାବରେ,
ବୋଇଲେ ଶିଷ୍ୟର ନର୍କ ଗତି ହୁଏ
ଗୁରୁ ବାକ୍ୟେ ଯେ ନ ଡରେ ।
ଯାଦବ ପ୍ରକାଶ ପଚାରିଲେ ଏହା
ଜାଣିବା ସତ୍ତ୍ୱେ କାହିଁକି,
ଉଦ୍ଦେଶ୍ୟମୂଳକ ଭାବେ ଏହା କଲ
ବୁଝାଇକି କହିବକି ।
ରାମାନୁଜ ଦେଇ ଉତ୍ତର ତାହାର
ବୋଇଲେ ଗୁରୁ ହେ ଶୁଣ,
ବୃକ୍ଷପାଶେ ଯାହା ଥାଏ ଅନ୍ୟେ ଦିଏ
ନୁହେଁ ସ୍ୱାର୍ଥପର ଗୁଣ ।
ଯାହା ବି କରିଛି ଲୋକମାନଙ୍କର
ଉନ୍ନତି ପାଇଁ କରିଛି,
ଈଶ୍ୱରାନୁଭୂତି ସୁଖ ଅନୁଭୂତି
ସର୍ବେ କରନ୍ତୁ ଭାବିଛି ।

ଏଥି ପାଇଁ ମୋତେ ନର୍କ ଗତି ଯଦି
ହେବ ମୁଁ ଅଛି ପ୍ରସ୍ତୁତ,
ସେଥି ପାଇଁ ତିଳେ ନାହିଁ ମୋ ସଂକୋଚ
ନୁହେଁ ଟିକେ ବି ଦୁଃଖିତ ।
ଈଶ୍ୱରାନୁଭୂତି ପାଇଁ ଆଧାତ୍ମିକ
ଅଭ୍ୟାସ ବିଷୟେ ଜ୍ଞାନ,
ବିସ୍ତାର କରିବା ତୀବ୍ର ଇଚ୍ଛା ଦେଖି
ଗୁରୁ ହେଲେ ତୋଷ ମନ ।
ରାମାନୁଜ ଶିରେ ଢାଳି ଆଶୀର୍ବାଦ
ସ୍ନେହରେ ଦେଲେ ପଠାଇ,
ଆଧାତ୍ମିକାଭ୍ୟାସ ପ୍ରକୃତ ଜ୍ଞାନର
ବିସ୍ତାରିତ କର ଯାଇ ।
ଗୁରୁ ଦତ୍ତ ଜ୍ଞାନ ରାମାନୁଜ ଅନ୍ୟ
ମାନଙ୍କ ପାଶେ ବିସ୍ତାର,
କରିବାକୁ ଚେଷ୍ଟା କଲେ ରାମାନୁଜ
ତାହା ପରେ ନିରନ୍ତର ।
ଶିଷ୍ୟର ନିସ୍ୱାର୍ଥ ପର ମନୋଭାବ
ଦେଖି ଖୁସି ହେଲେ ଗୁରୁ,
ବୋଇଲେ ଆଧ୍ୟାତ୍ମ୍ୟ ଜଗତେ ବହୁତ
ବଢ଼ିବ ଆଶୀର୍ବାଦରୁ ।
ଆମେ ମଧ୍ୟ ଆମ ଗୁରୁଙ୍କ ପାଖରୁ
ଯେ ଜ୍ଞାନ କରିଛେ ପ୍ରାପ୍ତ,
ଅନ୍ୟ ମାନଙ୍କର ନିକଟେ ବିସ୍ତାର
ତାହା କରିବା ଉଚିତ ।



# ପଦ୍ମପାଦ ଓ ଆଚାର୍ଯ୍ୟ ଶଙ୍କର



କାବେରୀ ତଟରେ ସ୍ଥିତ ପ୍ରଦେଶରେ
ଚୋଳ ରାଜାଙ୍କ ରାଜୁତି,
ବିମଳ ନାମରେ ଧାର୍ମିକ ବ୍ରାହ୍ମଣ
ଜଣେ ସେଠି ରହୁଥା'ନ୍ତି ।
ପ୍ରଭୁ ପ୍ରସାଦରୁ ଗୃହରେ ତାଙ୍କର
ଉଇଁଲା ଚନ୍ଦ୍ର ଉଦିଆ,
ପତ୍ନୀ ଭାଗ୍ୟବତୀ ହେଲେ ପୁତ୍ରବତୀ
ଶୁଣାଗଲା କୁଆଁ କୁଆଁ ।
କ୍ରମେ ସେହି ପୁତ୍ର କିଶୋର ହୋଇଲା
ବେଦାଦି ଶାସ୍ତ୍ରେ ଧୂରୀଣ,
ବସ୍ତୁବାଦୀ ଏହି ଅଳିକ ସଂସାର
ହେଲା ଆକର୍ଷଣ ହୀନ ।
ସଂସାର ସାଗର ହେବା ପାଇଁ ପାର
ଉତ୍ତମ ଗୁରୁ ଖୋଜଇ,
ସଂସାର ଗଢ଼ିବା ଦିଲ୍ଲୀର ଲଡୁକୁ
ସସମ୍ମାନେ ଠୁକୁରାଇ ।
ଗୁରୁ ସନ୍ଧାନରେ ପହଞ୍ଚି କାଶିରେ
ସୌଭାଗ୍ୟେ ଶଙ୍କରାଚାର୍ଯ୍ୟ,
ଭେଟିଲା କରନ୍ତି ଆଧ୍ୟାତ୍ମିକ ଭାଷ୍ୟ
ବ୍ୟାଖ୍ୟା ମହନୀୟ କାର୍ଯ୍ୟ ।
ବ୍ରହ୍ମତେଜୋଦୀପ୍ତ ପିଲାଟି ଦଉଡ଼ି
ଲୋଟିଗଲା ପାଦ ତଳେ,
ମନନଶୀଳତା ନିଷ୍ଠା ଜ୍ଞାନ ଦେଖି
ଗୁରୁ ଟେକିନେଲେ କୋଳେ ।

ଶିଷ୍ୟ ରୂପେ କରି          ଗ୍ରହଣ ସନ୍ନ୍ୟାସ
ଆଶ୍ରମର ଦେଲେ ଦୀକ୍ଷା,
ପୂଜା ଜପ ଧ୍ୟାନ          ତପସ୍ୟା ଆସନ
ଦେଲେ ପ୍ରାଣାୟାମ ଶିକ୍ଷା ।
ସନ୍ନ୍ୟାସ ଆଶ୍ରମେ          ଗୁରୁଙ୍କ ପ୍ରଦତ୍ତ
ସନନ୍ଦନ ହେଲା ନାମ,
ଶଙ୍କରାଚାର୍ଯ୍ୟଙ୍କ          ଶ୍ରେଷ୍ଠ ଶିଷ୍ୟ ମଧ୍ୟେ
ହେଲା ସିଏ ଅନ୍ୟତମ ।
ଏକଦା କାଶିର          ରହଣି କାଳରେ
ଅପର ପାର୍ଶ୍ୱେ ଗଙ୍ଗାର,
ଓଦାବସ୍ତ୍ର ଶୁଖା          କାର୍ଯ୍ୟ କରୁଥିଲେ
ସନନ୍ଦନ ଗୁରୁଙ୍କର ।
ଶଙ୍କର ଚାହିଁଲେ          ଶିଷ୍ୟ ଗୁରୁଭକ୍ତି
ଦେଖୁ ସଂସାର ଚକ୍ଷୁରେ,
ଶୁଖାବସ୍ତ୍ର ଧରି          ଆସିବାକୁ ଶୀଘ୍ର
ଗୁରୁ ଡାକିଲେ ତାହାରେ ।
ଗୁରୁଙ୍କ ଆଦେଶ          ଶ୍ରବଣ କରନ୍ତେ
ଭୁଲି ହିତାହିତ ଜ୍ଞାନ,
ଶୁଣିବା ସ୍ଥାନରୁ          ଶୀଘ୍ରାତିଶୀଘ୍ର ସେ
କରିଲେ ପ୍ରତ୍ୟାଗମନ ।
ଭାବାବେଗେ ଗୁରୁ          ପ୍ରେମ ଭକ୍ତି ଭୋଳ
ଗୁରୁ ପ୍ରିୟ ସନନ୍ଦନ,
କଠିନ ଭୂମିରେ          ଯେମନ୍ତ ଗମିଲେ
ହୋଇକରି ମୋହାଛନ୍ନ ।

ଗୁରୁ କାର୍ଯ୍ୟ ନିଶା ବିଭୋର ଭୁଲିଲେ
ଖରସ୍ରୋତା ସ୍ରୋତସ୍ୱିନୀ,
ଗୁରୁ ଭକ୍ତି ମର୍ତ୍ତେ ଚମତ୍କାର କଲା
କୃପା କଲେ ମନ୍ଦାକିନୀ ।
ସନନ୍ଦନ ପଦ ଜଳ ପରେ ଯହିଁ
ପଡ଼ିଲା ପଦ୍ମେକ ତହିଁ,
ସ୍ଥାପନ କରିଲେ ଗଙ୍ଗାମାତା ତହିଁ
ପୁତ୍ରପରେ ଦୟାବହି ।
ପାଦ ତଳେ ପଦ୍ମ ଫୁଟି ଉଠୁଥିଲା
ଜଳପରେ ନିରାପଦେ,
ସନନ୍ଦନ ଚାଲି ଯାଉଥିଲେ ଆଗେ
ଆଶଙ୍କା ନ ଥିଲା ହୃଦେ ।
ଚମତ୍କାର ଏହି ଦେଖଣାହାରିଏ
ଦେଖୁଥିଲେ ସିନା ନେତ୍ରେ,
ସନନ୍ଦନ ନିଜେ ଥିଲେ ଅନଭିଜ୍ଞ
ଚିନ୍ତାହୀନ ଥିଲେ ଚିତ୍ତେ ।
ଦର୍ଶକଙ୍କ ମୁଖ ଭୟ ଆଶ୍ଚର୍ଯ୍ୟରେ
ରହିଯାଇଥିଲା ଖୋଲା,
ଚମତ୍କାର ଅଙ୍କ ସନନ୍ଦନ ବସ୍ତ୍ର
ଗୁରୁଙ୍କୁ ପ୍ରଦାନ କଲା ।
ଗୁରୁ ପଚାରିଲେ ବାବୁ ତୁମେ ଗଙ୍ଗା
ହୋଇଲ କିପରି ପାରି,
ଶିଷ୍ୟଟି କହିଲା ପାରି ହେଲି ଗୁରୁ
ନାମ ପାଦକୁ ସୁମରି ।

ଆପଣଙ୍କ ନାମ            କଲେ ସୁମରଣା
ଅଥଳ ମହାସାଗର
କ୍ଷୁଦ୍ର ସର ପରି            ମନେ ହୁଏ ମୋର
ଲାଗେ ଆଣ୍ଠୁଏ ଗଭୀର ।
ଆପଣଙ୍କ ଡାକ            ଶୁଣିବା ପରେ ମୁଁ
ଭାବିଛି ଗୋଟିଏ କଥା
କେହ୍ନେ ଯଥାଶୀଘ୍ର            ଗୁରୁଙ୍କ ପାଖରେ
ପହଞ୍ଚିବି ଯଥାକଥା ।
ଆଗେ ଗଙ୍ଗା ନଦୀ            ରହିଛନ୍ତି ବୋଲି
ରହି ନାହିଁ ମୋ ସ୍ମରଣ,
ଡାକ ଶବ୍ଦ ପରେ            ଏବେ ମୁଁ ଦେଖୁଛି
ଆପଣଙ୍କର ଚରଣ ।
ସମସ୍ତ ଘଟଣା     ଆନନ୍ଦରେ ଗୁରୁ
ସନନ୍ଦନେ କଲେ ଜ୍ଞାତ,
ଧନ୍ୟ ଧନ୍ୟ ତୁମେ            ତୁମ୍ଭ ପାଇଁ ସୃଷ୍ଟି
କଲେ ପଦ୍ମ ଗଙ୍ଗା ମାତ ।
ଆଜି ଠାରୁ ତୁମେ            ପଦ୍ମପାଦ ରୂପେ
ସଂସାରେ ହୋଇବ ଖ୍ୟାତ,
ଗୁରୁଭକ୍ତି ବଳେ            କି କରି ପାରଇ
ଜାଣିବ ସାରା ଜଗତ ।



# ଗିରି ଓ ଶଙ୍କରାଚାର୍ଯ୍ୟ

ଗିରି ନାମେ ଏକ ଶିଷ୍ୟ ରହୁଥିଲା
ଶଙ୍କରଙ୍କ ନିକଟରେ,
ପୂର୍ଣ୍ଣ ନିରକ୍ଷର ଥିଲେ ସେ ବାସ୍ତବେ
ଅନ୍ୟ ଶିଷ୍ୟ ତୁଳନାରେ ।
ଗୁରୁଙ୍କର ବସ୍ତ୍ର ପ୍ରକ୍ଷାଳନ ସେବା
ତାଙ୍କ ପରେ ଥିଲା ନ୍ୟସ୍ତ,
ଗୁରୁଦେବ ପ୍ରତି ଅଗାଧ ଭକତି
ଭରିଥିଲା ତାଙ୍କ ଚିତ୍ତ ।
ଗୁରୁ ସେବା ଆଗେ ଅନ୍ୟ ସବୁ ତୁଚ୍ଛ
ଥିଲା ତାହାଙ୍କ ନିମନ୍ତେ,
ନିଷ୍ଠାର ସହିତ ଆଶ୍ରମର କାର୍ଯ୍ୟ
କରନ୍ତି ଆନନ୍ଦ ଚିତ୍ତେ ।
ଗୁରୁ ଦତ୍ତ ଶିକ୍ଷା ବୁଝନ୍ତିନି ସିନା
ଜାଣି ଗୁରୁଙ୍କର ବାଣୀ,
ଶ୍ରଦ୍ଧାର ସହିତ ଶୁଣନ୍ତି ସର୍ବଦା
ସର୍ବଶ୍ରେଷ୍ଠ ଧ୍ୟେୟ ମଣି ।
ଆଚାର୍ଯ୍ୟ ଶଙ୍କର ଆରମ୍ଭ ନ କରି
ପାଠ ପଢ଼ା ଇତସ୍ତତ
ଦିନେ ନିର୍ଦ୍ଧାରିତ ସମୟରେ କରୁ
ଥିଲେ ଖାଲି ଦୃଷ୍ଟିପାତ ।
ମନ ଗୁରୁଙ୍କର ନ ଥିବାର ସ୍ଥିର
ଉପସ୍ଥିତ ଶିଷ୍ୟେ ଦେଖି,
ପୁଛିଲେ ଗୁରୁଜୀ ଏ କି ବିପରୀତ
ଦେଖୁଛି ଆମର ଆଖି ।

କି ଘଟିଛି ଆଜ ଅଧ୍ୟାପନା କାର୍ଯ୍ୟ
ଆରମ୍ଭ କିମ୍ବା ନ କର,
କି କାରଣେ ମନ ଅସ୍ଥିର ରହିଛି
ସୁସ୍ଥ ନାହିଁ କି ଶରୀର ।
ଆଚାର୍ଯ୍ୟ ସାମାନ୍ୟେ ସ୍ମିତ ହସ ହସି
ବୋଇଲେ ସମସ୍ତ ଶିଷ୍ୟ,
ଉପସ୍ଥିତ ହେଲେ ପାଠ ପଢ଼ା କାର୍ଯ୍ୟ
ଆରମ୍ଭ ହେବ ଅବଶ୍ୟ ।
ତୁମେ ସମସ୍ତେ ତ ଉପସ୍ଥିତ ଅଛ
ଗିରିକୁ ମୁଁ ଦେଖୁ ନାହିଁ,
ସେ ଆସିଲେ ପାଠ ଆରମ୍ଭ କରିବା
ଯାଇ ଅଛି ସିଏ କାହିଁ ।
ଆଚାର୍ଯ୍ୟଙ୍କ ବାଣୀ ଜଣେ ଶିଷ୍ୟ ଶୁଣି
ବୋଇଲା ଆଚାର୍ଯ୍ୟ ଶୁଣ,
ବସ୍ତ୍ର ପ୍ରକ୍ଷାଳନ ନିମନ୍ତେ ନଦୀକୁ
ଗିରି କରିଛି ଗମନ ।
ଘେନି ଶ୍ରବଣରେ ଆଚାର୍ଯ୍ୟ କହିଲେ
ଆସୁ ସେ ନ ଚିନ୍ତ ଚିତ୍ତେ,
ଭାବିଲେ ସମସ୍ତେ ନିରକ୍ଷର ଗିରି
ନିମନ୍ତେ ପ୍ରତିକ୍ଷା ଏତେ ।
ପଦ୍ମପାଦ ନାମେ ଶିଷ୍ୟ ଉଠି ଭଣେ
ଗିରି ଅଟେ ନିରକ୍ଷର,
ଶାସ୍ତ୍ରାଲୋଚନାରୁ କି ବୁଝିବ ସିଏ
ଥିଲେ ଅବା ଏହିଠାର ।

ଗୁରୁସ୍ମିତ ହସି ବୋଇଲେ ସେ ଆସୁ
ବୁଝି ପାରେ ନାହିଁ ସିନା,
ଗୁରୁ ବାକ୍ୟ ଶ୍ରଦ୍ଧା ବିଶ୍ୱାସେ ଶୁଣେ ସେ
ଯାହା ଅନ୍ୟଠି ଦିଶେନା ।
ତେଣେ ଗିରିଙ୍କର ଭାଗ୍ୟ ସୁପ୍ରସନ୍ନ
ହୋଇଲା ଗୁରୁ କୃପାରେ,
ଐକାନ୍ତିକ ଗୁରୁ ଭକ୍ତି କଲା ତାଙ୍କୁ
ଯୋଗ୍ୟ ବିଦ୍ୟାଧାରଣରେ ।
ଗ୍ରହଣ କରିବା ଧାରଣ କରିବା
ସାମର୍ଥ୍ୟ ସହିତ ଶ୍ରଦ୍ଧା,
ଜ୍ଞାନାହରଣର ଅଧିକାର ହେତୁ
ଅଜାଡ଼େ ଯାହାକୁ ବିଦ୍ୟା ।
ଗ୍ରହଣ କରିବା ସାମର୍ଥ୍ୟ ନାହିଁ ଯା'
ଗୁରୁଙ୍କର ଉପଦେଶ,
ଗୁରୁଙ୍କର ବାକ୍ୟରେ ଶ୍ରଦ୍ଧା ନାହିଁ ଯା'ର
କୃପା ଆସେନା ତା' ପାଶ ।
ନିଜକୁ କରୁଣା ପ୍ରାପ୍ତି ପାଇଁ ଯିଏ
କରିଣ ଥାଏ ପ୍ରସ୍ତୁତ,
ଗୁରୁକୃପା ତାହା ଉପରେ ବରଷେ
ହୋଇଥିଲେ ଗୁରୁ ଭକ୍ତ ।
ଗୁରୁ ଭକତିର ମାହାତ୍ମ୍ୟ ବୁଝାଇ
ଶିଷ୍ୟଙ୍କ ବିଦ୍ୟାଭିମାନ,
ଦୁରକରିବାକୁ ଆଚାର୍ଯ୍ୟ ଚିନ୍ତିଲେ
ଏକଇ ଉପାୟ ମନ ।




ପାଠରେ ପଛୁଆ ଉପେକ୍ଷାର ପାତ୍ର
ନୁହେଁ ଦିବ୍ୟ ଶକ୍ତି ବଳେ,
ବୁଝାଇବା ପାଇଁ ଗୁରୁ ସର୍ବବିଦ୍ୟା
ପ୍ରଦାନ କରିଲେ ହେଳେ ।
ନିମିଷକେ ଗୁରୁ କରୁଣାରେ ହୋଇ
ବ୍ରହ୍ମବିଦ୍ୟା ଅଧିକାରୀ,
ଆସିଲେ ତ୍ରୋଟକ ଛନ୍ଦେ ଗୁରୁସ୍ତୋତ୍ର
ରଚି ଗାନ କରି କରି ।
ଗିରିଙ୍କ ମୁଖରୁ ଅପରୂପ ଶ୍ଳୋକ
ଶୁଣି ଶିଷ୍ୟେ ଚମକୃତ,
କିପରି ରଚିଲେ ଉଚ୍ଚାରି ନପାରେ
ଯିଏ ପଢିଏ ସଂସ୍କୃତ ।
ବାସ୍ତବେ ଗିରିଙ୍କ ଗୁରୁଭକ୍ତି ଗୁରୁ
ନିଷ୍ଠାର ଏ ଚମତ୍କାର,
ମୂର୍ଖ ଶିଷ୍ୟେ ଯାହା ପ୍ରଦାନ କରିଲା
ସର୍ବ ବିଦ୍ୟା ଅଧିକାର ।
ତ୍ରୋଟକ ଆଚାର୍ଯ୍ୟ ନାମ ଦେଇ ଗୁରୁ
ବଦରିକାଶ୍ରମ ଠାରେ,
ଅଧିଷ୍ଠିତ କଲେ ଯୋଶୀମଠାଧୀଶ
ରୂପେ ଉତ୍ତରାଖଣ୍ଡରେ ।
ଗୁରୁ ସେବା ଗୁରୁ ଭକ୍ତି ଗୁରୁ ନିଷ୍ଠା
ସାମାନ୍ୟେ ଅସାଧାରଣ,
କରି ଗଢ଼ି ତୋଳେ ଗୁରୁଙ୍କ କରୁଣା
ଗିରି ତା' ଉଦାହରଣ ।



# ହସ୍ତମଲକ ଓ ଶଙ୍କରାଚାର୍ଯ୍ୟ

ପଶ୍ଚିମ ଭାରତ　　ଭ୍ରମୁ ଭ୍ରମୁ ଆଦି
ଶଙ୍କର ଶ୍ରୀବାଲି ଗ୍ରାମେ,
ପହଞ୍ଚିଲେ ଯେବେ　　ମୂକ ପିଲାଟିକୁ
ଧରି ପ୍ରଭାକର ନାମେ ।
ବ୍ରାହ୍ମଣ ଜଣିଏ　　ଦୁଃଖେ ପାଶେ ଆସି
ବୋଇଲା ପ୍ରଭୁ ଉଦ୍ଧର,
ପିଲାଟି ଦିନରୁ　　ଶୁଣେନା ଏ କିଛି
ବୟସ ଏହାର ତେର ।
ପସନ୍ଦ ଅଥବା　　ନାପସନ୍ଦ ତା’ର
ସମ୍ମାନ ବା ଅପମାନ,
ଭାବନା ତା’ ନାହିଁ　　ସଂପୂର୍ଣ୍ଣ ନିଷ୍କ୍ରିୟ
ସଦା ରହେ ଉଦାସୀନ ।
ଆମ କଥା ସିଏ　　ବୁଝେ ନାହିଁ କିଛି
ଆଗ୍ରହୀ ନୁହେଁ କାହିଁରେ,
ବ୍ରାହ୍ମଣ ପଢ଼ିବା　　ଶାସ୍ତ୍ର କିମ୍ବା ବେଦ
ପଢ଼ିନାହିଁ ଆଗ୍ରହରେ ।
ସାମାନ୍ୟ ଅକ୍ଷର　　ଜ୍ଞାନ ନାହିଁ ତା’ର
ଶିକ୍ଷଣେ ଆଗ୍ରହ ନାହିଁ,
ବହୁତ କଷ୍ଟରେ　　ତା’ ଉପନୟନ
ସଂସ୍କାର କରିଛି ମୁହିଁ ।
ସରଳ ପ୍ରକୃତି　　ଦେଖି ବଦମାସ
କେହି ତାକୁ ଦେଲେ କଷ୍ଟ,
ବିନା ପ୍ରତିବାଦେ　　ସହି ନିଏ ସବୁ
ନ ହୁଏ କେବେ ବି ରୁଷ୍ଟ ।

କେବେ ଖାଏ କେବେ       ଖାଏ ନାହିଁ କିଛି
ଖାଦ୍ୟ ପାଇଁ ନାହିଁ ରୁଚି,
ଏହା ସତ୍ତ୍ୱେ ଥାଏ       ସଦାବେଳେ ଖୁସି
ଭବେ ଦେଖାଏ ଅରୁଚି ।
କେଉଁ କାରଣରୁ       ତା'ର ଏ ଅବସ୍ଥା
ଫେଡ଼ି କୁହ ଋଷିବର,
କୃପାକରି ଏହି       ନିରପରାଧକୁ
କ୍ଷମା ଗୁଣେ ରକ୍ଷାକର ।
ଶଙ୍କରାଚାର୍ଯ୍ୟ ସେ       ପିଲାଟିକୁ ଦେଖୁ
ଦେଖୁ ସାରିଥିଲେ ଜାଣି,
ମୁକ ବା ବଧିର       ନୁହଁଇଁ ତ ସିଏ
ସ୍ୱତନ୍ତ୍ର ତା'ର କାହାଣୀ ।
ପୂର୍ଣ୍ଣ ଆଲୋକିତ       ଜ୍ଞାନବାନ ମୁକ୍ତ
ଅତ୍ୟୁଚ୍ଚସ୍ତରର ଆତ୍ମା,
ତାଙ୍କ ଦିବ୍ୟଦର୍ଶନ       ପାଇବା ପାଇଁ କି
ଚାହେଁ ତା'ର ଅନ୍ତରାତ୍ମା ।
ଏତେ ଦିନ ଧରି       ସଦ୍ ଗୁରୁଙ୍କ ପଥ
ଚାହିଁ ରହି ଅଛି ବସି,
ଜାଣନ୍ତିନି କେହି       ତା' ଗୁପ୍ତ ରହସ୍ୟ
ସେ ଅନ୍ଧାର ରାତ୍ରୀ ଶଶି ।
ରହସ୍ୟ ତାହାର       ଖୋଲିବା ପାଇଁକି
ଶିବାବତାର ଶଙ୍କର,
ପ୍ରଶ୍ନ କଲେ ତାକୁ       ସ୍ନେହ ସହକାରେ
ହସ୍ତ ରଖି ତା'ର ଶିର ।
ଆହେ ଶିଶୁ ତୁମେ       କିଏ କା'ର ପୁତ୍ର
କୁଆଡ଼େ ତୁମେ ଯାଉଛ,

ନାମ ତୁମ କିସ		ଦିଅ ହେ ଉତ୍ତର
କେଉଁ ଠାରୁ ଆସିଅଛ ।
ସଦ୍ ଗୁରୁଙ୍କ ସ୍ପର୍ଶ		ସଦ୍ ଗୁରୁଙ୍କ ପ୍ରଶ୍ନ
ସଦ୍ ଗୁରୁଙ୍କ ସାନିଧ୍ୟ,
ଖୋଲିଦେଲା ତା'ର		ବନ୍ଧ ଗ୍ରନ୍ଥି ସବୁ
କରିଲା ବୁଦ୍ଧି ନିଃଶୋଧ* ।  *ନିର୍ମଳ
ମୁକ ହୋଇଗଲା		ବାଚାଳ ଗୁରୁଙ୍କ
କେବଳ ଉପସ୍ଥିତିରେ,
ତେରବର୍ଷ ଶବ୍ଦ		ଉଚ୍ଚାରି ନାହିଁ ଯେ
କହିଲା ତା' ଉତ୍ତରରେ ।
ନୁହେଁ ମୁଁ ମଣିଷ		ନୁହଁଇ ଦେବତା
ନୁହେଁ ଯକ୍ଷ ରକ୍ଷ କେହି,
ବ୍ରାହ୍ମଣ କ୍ଷତ୍ରିୟ		ବୈଶ୍ୟ ଶୁଦ୍ର ନୁହେଁ
ବ୍ରହ୍ମଚାରୀ ଅବା ଗୃହୀ ।
ନୁହେଁ ବାନପ୍ରସ୍ଥି		ନୁହେଁ ମୁଁ ସନ୍ନ୍ୟାସୀ
ନାହିଁ ମୋର ରୂପ ନାମ,
ମୁଁ ହେଉଛି ଜ୍ଞାନ		ସ୍ୱରୂପ ପରମ
ପବିତ୍ର ଆନନ୍ଦ ବ୍ରହ୍ମ ।
ରବି ଯେହ୍ନେ ଭବେ		ସ୍ୱକାର୍ଯ୍ୟରେ ଜୀବେ
ହେବା ପାଇଁ ନିୟୋଜିତ,
ଦିଅଇ ପ୍ରେରଣା		ନିଜ ନିଜ କାର୍ଯ୍ୟେ
ଜୀବ ସେଥି ପାଇଁ ବ୍ୟସ୍ତ ।
ସେହିପରି ମନ		ଇନ୍ଦ୍ରିୟେ ସ୍ୱକାର୍ଯ୍ୟେ
କରଇ ଯିଏ ପ୍ରବୃତ
ନିତ୍ୟ ଉପଲବ୍ଧି		ସ୍ୱରୂପ ଆତ୍ମା ମୁଁ
ଖାଦି* ଉପାଧି ରହିତ ।  *ଖାଦି=ଖ+ଆଦି

ଅଗ୍ନିର ପ୍ରକୃତି ଯେପରି ଉଷ୍ଣତା
ସେପରି ଯା'ଆଶ୍ରୟରେ,
ମନ ଇନ୍ଦ୍ରିୟାଦି ସ୍ୱକାର୍ଯ୍ୟେ ପ୍ରବୃତ୍ତ
ଥାନ୍ତି ସବୁ ସମୟରେ ।
ଚିନ୍ତନ ଭାବନା ବୁଦ୍ଧିଜ୍ଞାନୁ ବହୁ
ଉର୍ଦ୍ଧ୍ୱେ ସର୍ବଦା ଯେ ସ୍ଥିତ,
ସେହି ଅବିକାରୀ ଶୁଦ୍ଧ ଚିତ୍ ରୂପୀ
ଆତ୍ମା ମୁଁ ଅଟେ ଶାଶ୍ୱତ ।
ମୁକୁରରେ ଦୃଶ୍ୟ ମୁଖ ପ୍ରତିବିମ୍ବ
ମୁଖୁ ଯେହ୍ନେ ନୁହେଁ ଭିନ୍ନ,
ସେହିପରି ବୁଦ୍ଧି ଦର୍ପଣରେ ଜୀବ
ରୂପେ ଦୃଶ୍ୟ ଯେ ଚୈତନ୍ୟ ।
ତା'ର ପ୍ରତିଛବି ଚେତନା ସ୍ୱରୂପୀ
ସ୍ୱୟଂ ନିଜେ ଯେ ଅନନ୍ୟ,
ସେ ନିତ୍ୟୋପଲବ୍ଧ ଶୁଦ୍ଧ ଜ୍ଞାନ ରୂପୀ
ଆତ୍ମା ମୁଁ ନୁହଁଇ ଅନ୍ୟ ।
ଦର୍ପଣ ଅଭାବେ ମୁଖ ପ୍ରତିବିମ୍ବ
ନେତ୍ରେ ସିନା ଦିଶେ ନାହିଁ
ମୁଖର ଅସ୍ତିତ୍ୱ କୌଣସି କ୍ଷେତ୍ରରେ
କେବେ ଲୋପ ପାଏ ନାହିଁ
ସେହିପରି ବୁଦ୍ଧି ଅଭାବେ ନିଜର
ରଖି ଥାଏ ଯେ ଅସ୍ତିତ୍ୱ
ସେ ନିତ୍ୟୋପଲବ୍ଧ ଆତ୍ମା ମୁଁ ଅଟଇ
ଆନନ୍ଦମୟ ଶାଶ୍ୱତ ।
ମନ ଦ୍ୱାରା ଯିଏ ଅପ୍ରାପ୍ୟ ଅଟଇ
ଚକ୍ଷୁ ଦ୍ୱାରା ମିଳେ ନାହିଁ,
ମନ ନୟନାଦି ସ୍ଥିତିରୁ ଉର୍ଦ୍ଧ୍ୱରେ
ଯେ ସର୍ବଦା ଅଛି ରହି ।

ମନର ମନ ଯେ ଚକ୍ଷୁର ବି ଚକ୍ଷୁ
ସେ ଶାଶ୍ୱତ ଆତ୍ମଜ୍ଞାନ,
ସ୍ୱରୂପୀ ଆତ୍ମା ମୁଁ ନିତ୍ୟାନନ୍ଦ ରୂପୀ
ନ ଥାଏ କାହିଁରେ ଲୀନ ।
ଜଳପୂର୍ଣ୍ଣ ବହୁ ପାତ୍ରରେ ଯେପରି
ଏକ ସୂର୍ଯ୍ୟ ଦିଶୁଥାଏ,
ସେପରି ସ୍ୱୟଂ ଯେ ବିଶୁଦ୍ଧ ଚୈତନ୍ୟ
ରୂପେ ପ୍ରକାଶିତ ହୁଏ ।
ଏକ ଜ୍ୟୋତି ଆତ୍ମା ଅନେକ ବୁଦ୍ଧିରେ
ଅନେକ ରୂପରେ ଦିଶେ,
ସେ ନିତ୍ୟୋପଲବ୍ଧ ଶାଶ୍ୱତ ଆତ୍ମା ମୁଁ
ଘଟେ ଘଟେ ଯିଏ ବସେ ।
ରବି ଯେହ୍ନେ ପ୍ରତି ନେତ୍ରେ ପ୍ରକାଶିତ
ଏକ ଏକ କରେ ନାହିଁ,
ଅପିତୁ ସମସ୍ତ ନେତ୍ରେ ଉଦ୍ଭାଷିତ
ଏକାଥରକେ କରଇ ।
ସେପରି ପ୍ରତ୍ୟେକ ବୁଦ୍ଧିକୁ ଏକତ୍ର
ସତ୍ତା ସ୍ଫୁର୍ତ୍ତି ଯିଏ ଦିଏ,
ସେ ନିତ୍ୟୋପଲବ୍ଧି ସ୍ୱରୂପ ଶାଶ୍ୱତ
ଆତ୍ମା ମୁଁ ସବୁଠି ଥାଏ ।
ସୂର୍ଯ୍ୟ ଦ୍ୱାରା ଯେଉଁ ରୂପ ପ୍ରକାଶିତ
ନେତ୍ର ତାକୁ ଦେଖି ପାରେ,
ଅପ୍ରକାଶିତ ଯେ ରୂପ ନେତ୍ରେନ୍ଦ୍ରିୟ
ଯେହ୍ନେ ଗ୍ରହଣ ନ କରେ ।
ସେହିପରି ସୂର୍ଯ୍ୟ ଯେ ଚୈତନ୍ୟ ଆତ୍ମା
ଦ୍ୱାରା ପ୍ରକାଶିତ ହୋଇ,
ରୂପ ନେତ୍ରାଦିଙ୍କୁ କରେ ପ୍ରକାଶିତ
ଶାଶ୍ୱତ ଆତ୍ମା ମୁଁ ସେଇ ।

ସ୍ଥିରାସ୍ଥିର ଜଳ ପରେ ଏକ ସୂର୍ଯ୍ୟ
ବିମ୍ବ ଯେହ୍ନେ ଭିନ୍ନ ଦିଶେ,
ସେହିପରି ଏକ ଶାଶ୍ୱତ ଆତ୍ମା ମୁଁ
ଚର ଅଚରେ ପ୍ରକାଶେ ।
କଳା ବାଦଲରେ ଢ଼ଙ୍କା ସୂର୍ଯ୍ୟ ଦେଖି
ଯେହ୍ନେ ମନ୍ଦ ବୁଦ୍ଧି ଭାବେ,
ତେଜ ହୀନ ପୁଣି ପ୍ରକାଶ ରହିତ
ସୂର୍ଯ୍ୟ ହରାଇଛି ସିଦ୍ଧି ।
ସେହିପରି ମୂଢ଼େ ବଦ୍ଧ ସ୍ୱରୂପରେ
ଦେଖାଯାଉଥିବା ନିତ୍ୟ,
ଆତ୍ମଜ୍ଞାନରୂପ ଆତ୍ମା ମୁଁ ଦିଶଇ
ବାସ୍ତବେ ମୁକ୍ତ ଶାଶ୍ୱତ ।
ସଦା ଶୁଦ୍ଧ ସଦା ନିର୍ମଳ ସମସ୍ତ
ପଦାର୍ଥ ଅନ୍ତରେ ସ୍ଥିତ,
ସ୍ପର୍ଶ ଯା'ରେ କରି ହୁଏ ନାହିଁ ଯିଏ
ହୁଏ ବି ନାହିଁ ଦୂଷିତ ।
କ୍ଷର ନୁହେଁ ଯିଏ ଅକ୍ଷର ସଂସାରେ
ଶାଶ୍ୱତ ଆନନ୍ଦ ରୂପ,
ସେହି ଆତ୍ମଜ୍ଞାନ ସ୍ୱରୂପ ଆତ୍ମା ମୁଁ
ନିତ୍ୟୋପଲବ୍ଧି ସ୍ୱରୂପ ।
ରଙ୍ଗାକାର ଭେଦେ ମଣି ଭିନ୍ନ ଭିନ୍ନ
କଳ୍ପିତ ଯେପରି ହୁଏ,
ଏକା ଶଶି ଜଳେ ଅନେକ ଚଞ୍ଚଳ
ଯେଉଁ ପରି ଦେଖା ଯାଏ ।
ସେପରି ମୁଁ ଏକ ଆତ୍ମା ଭିନ୍ନ ଭିନ୍ନ
ସ୍ୱରୂପରେ ବ୍ୟାପି ଥାଇ,
ସାଧାରଣ ଜନେ ଭିନ୍ନ ଭିନ୍ନ ଭାବେ
ଦୃଶ୍ୟମାନ ହୋଇଥାଇ ।

ବ୍ରାହ୍ମଣ ପୁତ୍ରର ଏପରି ଉତ୍ତର
ଶଙ୍କରାଚାର୍ଯ୍ୟ ଶୁଣିଣ,
ଜାଣିଲେ ଏ ଶିଶୁ ଜଣେ ବ୍ରହ୍ମବେତ୍ତା
ନୁହେଁ ଇଏ ସାଧାରଣ ।
ହସ୍ତରେ ଅଁଳା ପରି ବ୍ରହ୍ମଙ୍କୁ ଯେ
ସ୍ପଷ୍ଟ ରୂପେ ଜାଣିଛନ୍ତି,
ବେଦାନ୍ତ ଦର୍ଶନେ ଉବୁଟୁବୁ ହୋଇ
ଡୁବୁକି ଯେ ମାରୁଛନ୍ତି ।
ଅନ୍ୟ ଶିଷ୍ୟ ମାନେ ଦେଖି ଏ ପ୍ରତିଭା
ଶଙ୍କରଙ୍କୁ ପୁଛା କଲେ,
ଗୁରୁ ଅବା ଶିକ୍ଷା ବିନା ଏ ବାଳକ
ବ୍ରହ୍ମଙ୍କୁ କେମନ୍ତେ ଜାଣିଲେ ।
ବୋଇଲେ ଶଙ୍କର ଏ ବାଳକ ଯେବେ
ଥିଲେ ଦୁଇ ବରଷର,
ମାତା ଯାର ସ୍ନାନ କରିବାକୁ ଗଲା
ଛାଡ଼ି ତାକୁ ନଦୀ ତୀର ।
ପିଲା ଖେଳୁ ଖେଳୁ ନଦୀ ଜଳେ ଡୁବି
ହରାଇଲା ଯେବେ ପ୍ରାଣ,
ତେ ନଦୀ ତଟରେ ରହୁଥିବା ଋଷି
ଦଉଡ଼ିଲେ ତତକ୍ଷଣ ।
ଅତି ବିକଳରେ ତା' ମାତା ରୋଦନ
ସହି ନ ପାରି ମହର୍ଷି,
ପରକାୟା ବିଦ୍ୟା ବଳରେ ରହିଲେ
ତାହାର ଦେହେ ପ୍ରବେଶି ।
ତେଣୁ ସେ ଅପଢ଼ା ପାଠ ପଢ଼ି ଅଛି
ନ ପଢ଼ି ହେଲା ପଣ୍ଡିତ,
ବ୍ରହ୍ମଜ୍ଞାନ ତା'ର ଅନୁଭବେ ନେଇ
ହୋଇଛି ନିତ୍ୟ ଶାଶ୍ୱତ ।

ପିତାଙ୍କୁ ତାହାର                    ବୋଇଲେ ଶଙ୍କର
ତୁମର ସୌଭାଗ୍ୟ ବଳେ,
ପୂର୍ବ ଜନ୍ମ ତପ                    ଅସମ୍ପୂର୍ଣ୍ଣ ହେତୁ
ଜନ୍ମିଛି ତୁମ୍ଭର କୋଳ ।
ବସ୍ତୁବାଦୀ ଏହି                    ଜଗତରେ ତା'ର
କିଛି ନାହିଁ ଦେବାନେବା,
ସଂସାର ହିତରେ                    ଦିଅ ମୋ ହାତରେ
ତାହାକୁ ସାଥିରେ ନେବା ।
ପିତା ଖୁସି ହୋଇ                    ଶଙ୍କର ସହିତ
ଛାଡ଼ି ଦେଲେ ନିଜ ପୁତ୍ର,
ଯେ ହସ୍ତମଳକ                    ନାମରେ ସଂସାରେ
ହେଲେ ସ୍ୱୟଂ ପ୍ରତିଷ୍ଠିତ ।
ଗୁରୁକୃପା ବଳେ                    ଅସମ୍ଭବ ହୁଏ
ସମ୍ଭବ ଏକ କ୍ଷଣରେ,
ସଦ୍ ଗୁରୁ କୃପାରୁ                    ମିଳି ଯାଏ ପଥ
ତାଙ୍କ କଟାକ୍ଷ ପାତରେ ।





# ଗୁରୁ ଦ୍ରୋଣାଚାର୍ଯ୍ୟ ଓ ଅର୍ଜୁନ

ଶିଷ୍ୟଟିଏ ନିଜ          ଗୁରୁ ପ୍ରତି ତା'ର
ଶ୍ରଦ୍ଧା ବିଶ୍ୱାସ ବଳରେ,
ସମର୍ଥ ହୁଅଇ          ପ୍ରାପ୍ତ କରିବାକୁ
ଗୁରୁ କୃପା ଅଚିରରେ ।
ତୃତୀୟ ପାଣ୍ଡବ          ଅର୍ଜୁନ ତାହାର
ବାସ୍ତବ ଉଦାହରଣ,
ଗୁରୁ ସେବା ଫଳେ          କରିଥିଲେ ଯିଏ
ଭବେ ଅସାଧ୍ୟ ସାଧନ ।
ଦ୍ରୋଣାଚାର୍ଯ୍ୟଙ୍କର          ଅତି ପ୍ରିୟପାତ୍ର
ମଧ୍ୟମ ପାଣ୍ଡବ ଥିଲେ,
ବହୁ ସମୟରେ          ଗୁରୁ ଅର୍ଜୁନଙ୍କ
ପ୍ରଶଂସା ବି କରୁଥିଲେ ।
ଅନ୍ୟ ଶିଷ୍ୟମାନେ          ଗାଣ୍ଡିବୀଙ୍କୁ ଈର୍ଷା
କରୁଥିଲେ ଏଥି ପାଇଁ,
ଭାବୁଥିଲେ ଗୁରୁ          ସର୍ବଶ୍ରେଷ୍ଠ ତା'ରେ
କରିବେ ଗୁପ୍ତେ ଶିଖାଇ ।
ଦିନେ ଗୁରୁ ଦ୍ରୋଣ          ଶିଷ୍ୟ ଗଣେ ନେଇ
ନଦୀକୁ ଗଲେ ଗାଧୋଇ,
କୂଳେ ଥିବା ଏକ          ବଟବୃକ୍ଷ ମୂଳେ
ରୁଣ୍ଡ ହେଲେ ସର୍ବେ ଯାଇ ।
ଏ ସମୟେ ଗୁରୁ          ଲକ୍ଷ୍ୟ କଲେ ନିଜେ
ଛାଡ଼ି ଆସିଛନ୍ତି ଧୋତି,
ହକାରି ଅର୍ଜୁନେ          ବୋଇଲେ ଆଶ୍ରମୁ
ଆଣ ବାବୁରେ ଝଟତି ।

ଅବିଳମ୍ବେ ଶିଷ୍ୟ ଆଶ୍ରମେ ଚଳିଲେ
ଦ୍ରୋଣାଚାର୍ଯ୍ୟ ଏ କାଳରେ,
ଶିଷ୍ୟେ ଡାକି ପାଶେ କହିଲେ କି ଶକ୍ତି
ରହିଛି ଦେଖ ମନ୍ତ୍ରରେ ।
ଗଦା ଧନୁତୀରେ ଯେଉଁ ଶକ୍ତି ଅଛି
ବହୁଗୁଣିତ ତା’ ହୁଏ,
ଅସ୍ତ୍ର ସହ ମନ୍ତ୍ର ହୋଇ ଗଲେ ଯୁକ୍ତ
ତାହାକୁ ପାରିବ କିଏ ।
ମନ୍ତ୍ର ଜପ କର୍ତ୍ତା ମହତ୍ତ୍ୱ ସହିତ
ବ୍ୟବହାରିକ କୌଶଳ,
ବୁଝିଗଲେ ମନ୍ତ୍ରେ ଅନୁଭବିବ ସେ
ତା’ ଅତୁଳନୀୟ ବଳ ।
ଲେଖୁଛି ଭୂମିରେ ଦିବ୍ୟ ମନ୍ତ୍ର ଏକ
କରି ପ୍ରୟୋଗ ତାହାର,
ସଂଯୋଗି ତୀରରେ ଛିଦ୍ର କରୁଅଛି
ପ୍ରତ୍ୟେକ ବଟ ପତର ।
ଗୋଟିଏ ତୀରକୁ ଉକ୍ତ ମନ୍ତ୍ର ଦ୍ୱାରା
କରିଣ ଅଭିମନ୍ତ୍ରିତ,
ଗୁରୁ ନିକ୍ଷେପିଲେ ସମସ୍ତେ ଦେଖିଲେ
ହେଲେ ଆଶ୍ଚର୍ଯ୍ୟ ଚକିତ ।
ପ୍ରତି ବଟ ପତ୍ରେ ଏକ ଏକ ଛିଦ୍ର
ସ୍ପଷ୍ଟ ରୂପେ କରି ଦେଇ,
ଗୁରୁଙ୍କ ନିକଟେ ତୀର ଫେରି ଆସି
ରହିଲା ତୂଣିରେ ଯାଇ ।

ତପ୍ପରେ ଚଳିଲେ ସ୍ନାହାନ ନିମନ୍ତେ
ଗୁରୁ ସହ ସବୁ ଶିଷ୍ୟ,
ଏ ସମୟେ ଧୋତି ହସ୍ତରେ ଫେରିଲେ
ଅର୍ଜୁନ ହୋଇ ହରଷ ।
ଖୁସି ଥିଲା ମନ କରିଛନ୍ତି ବୋଲି
ସ୍ୱହସ୍ତେ ଗୁରୁଙ୍କ କାମ,
ଗୁରୁଙ୍କ ପଥକୁ ଚାହିଁ ବଟ ମୂଳେ
କଲେ ଆନନ୍ଦେ ବିଶ୍ରାମ ।
ଚାହୁଁ ଚାହୁଁ ତାଙ୍କ ଦୃଷ୍ଟିକୁ ଆସିଲା
ବଟ ବୃକ୍ଷର ପତର,
ସବୁ ପତ୍ରେ ଛିଦ୍ର ବଢ଼ିଲା ଜିଜ୍ଞାସା
ଦେଖି ମନରେ ତାଙ୍କର ।
ତଳକୁ ଚାହୁଁଣୁ ମୃତ୍ତିକା ଉପରେ
ଦେଖିଲେ ଲିଖିତ ମନ୍ତ୍ର,
ଜାଣିଲେ ଏ ନିଶ୍ଚେ ଗୁରୁଙ୍କ ପ୍ରଦତ୍ତ
ମନ୍ତ୍ରର ଏହି କର୍ତ୍ତୃତ୍ୱ ।
ପାଠକରି ମନ୍ତ୍ର ମନରେ ରଖିଲେ
ତୀରଟିଏ କୌତୁହଳେ,
ଅଭିମନ୍ତ୍ରି ଦୃଢ଼ ବିଶ୍ୱାସ ସହିତ
ନିକ୍ଷେପିଲେ ବଳେ ବଳେ ।
ମନ୍ତ୍ରିତ ତୀରଟି ଆଉ ଏକ ଏକ
ଛିଦ୍ର କଲା ବଟ ପତ୍ରେ,
ସଫଳତା ଏହି ଖେଳାଇଲା ଖୁସି
ଶରୀରର ଛତ୍ରେ ଛତ୍ରେ ।

ଜ୍ଞାନ ଦାନ କାଳେ ଅନୁପସ୍ଥିତିରେ
ଗୁରୁ ଦେଲେ ଯେଉଁ ଜ୍ଞାନ,
ଗୁରୁ କୃପା ବଳେ ମିଳିଲା ତାହାଙ୍କୁ
ନିଜକୁ ମଣିଲେ ଧନ୍ୟ ।
ଗୁରୁଙ୍କ ସମୟ ହେବନାହିଁ ଆଉ
ଏଥିପାଇଁ ଅପଚୟ,
ଏଥିପାଇଁ ମନେ ମନେ ଅତି ଖୁସି
ପ୍ରକାଶିଲେ ଧନଞ୍ଜୟ ।
ସ୍ନାନ ସାରି ଗୁରୁ ସହ ଶିଷ୍ୟଗଣ
ବଟ ନିକଟକୁ ଆସି,
ନିଜ ନିଜ ବସ୍ତ୍ର ପାଲଟିଲେ ଖୋଜି
ଯେଝା ବସ୍ତ୍ର ହୋଇ ଖୁସି ।
ଅର୍ଜୁନ ହସ୍ତରୁ ବସ୍ତ୍ର ନେଇ ଗୁରୁ
ପିନ୍ଧିଲେ ନିଜ ବସନ,
ଏ କାଳେ ଅଲକ୍ଷ୍ୟେ ବରପତ୍ର ପରେ
ପଡ଼ିଲା ତାଙ୍କ ନୟନ ।
ଦେଖିଲେ ପ୍ରତ୍ୟେକ ପତ୍ରରେ ଦୁଇଟି
ଲେଖା ରନ୍ଧ୍ର ହୋଇଅଛି,
ପଚାରିଲେ ଗୁରୁ ସମସ୍ତ ଶିଷ୍ୟଙ୍କୁ
କିଏ ଏ କର୍ମ କରିଛି ।
ସର୍ବେ ନିରୁତ୍ତର ଦେଖି ଗୁରୁବର
ଅର୍ଜୁନକୁ ପାଶେ ରାଇ,
ବୋଇଲେ ଏକର୍ମ କରିଛ କି ତୁମେ
କୁହ ଭୟଶୂନ୍ୟ ହୋଇ ।

ସାମାନ୍ୟ ବିବ୍ରତ ହୋଇ ଅରଜୁନ
ବୋଇଲେ ହେ ଗୁରୁବର,
ଅନୁମତି ବିନା ମନ୍ତ୍ରର ପ୍ରୟୋଗ
କରିଛି ଦୋଷ ମୋହର ।
ଭାବିଲି ମନ୍ତ୍ରଟି ଅନ୍ୟ ଶିଷ୍ୟେ ଶିକ୍ଷା
ସାରିଛନ୍ତି ଯେଣୁ ଦେଇ,
ପୁନରାବୃତ୍ତିରେ ବୃଥା କାଳ ନଷ୍ଟ
କରାଇବି ବା କିମ୍ପାଇଁ ।
ବାସ୍ତବରେ ଦଣ୍ଡ ପାଇବାର ଯୋଗ୍ୟ
କ୍ଷମା କର କ୍ଷମା କର,
ପାଦତଳେ ପଡ଼ି ତୃତୀୟ ପାଣ୍ଡବ
ପ୍ରଣମିଲେ ବାରମ୍ବାର ।
ଗୁରୁ ଦୁଇ ହସ୍ତେ ଧରିଣ ଉଠାଇ
ନେଇ କଲେ କୋଳାଗ୍ରତ,
ବୋଇଲେ ତୁମର ଧୈର୍ଯ୍ୟ କୌତୁହଳ
ମନ୍ତ୍ରେ ଆସ୍ଥା ଅପ୍ରମିତ ।
ଶିଖିବାର ଇଛା ପ୍ରଶଂସ୍ୟ ତୁମର
ଧନ୍ୟ ତୁମଗୁରୁ ନିଷ୍ଠା,
ଶ୍ରେଷ୍ଠ ଧନୁର୍ଦ୍ଧର ସଂସାରେ ହୋଇବ
କରିଲେ ଏପରି ଚେଷ୍ଟା ।
ସମସ୍ତଙ୍କ ଆଗେ ମୁଁ ଏ ମନ୍ତ୍ର ଶକ୍ତି
କରିବାରେ ପ୍ରଦର୍ଶନ,
ଆଶ୍ଚର୍ଯ୍ୟ ପ୍ରକଟ କରିଣ ସମସ୍ତେ
ଚାଲିଗଲେ କରି ସ୍ନାନ ।

ମନ୍ତ୍ରର ପ୍ରୟୋଗ କରି ତା' ଶକତି
ପରୀକ୍ଷା କରିବା ପାଇଁ
ଜଣେ ହେଲେ ଶିଷ୍ୟ ଆଗ୍ରହ ଦେଖାଇ
ଆଗେଇ ଆସିଲେ ନାହିଁ ।
ଏକମାତ୍ର ତୁମେ ସାହସ ଦେଖାଇ
କୌତୁହଳ ପ୍ରଶମନେ,
କରିଲ ପ୍ରୟାସ ସଫଳ ବି ହେଲ
ଗୁରୁଭକ୍ତି ରଖି ମନେ ।
ଏତେ ଶିଷ୍ୟ ଥାଉ କେହି ଯା' ନ କଲେ
ତୁମେ ଦେଖାଇଲ କରି,
ଶ୍ରେଷ୍ଠ ସେହି ଶିଷ୍ୟ ସର୍ବଦା ଯେ ଥାଏ
ଗୁରୁ ପଦ ଅନୁସରି ।





# ଅନନ୍ୟ ଶିଷ୍ୟ ଏକଲବ୍ୟ

କୁରୁ ପାଣ୍ଡବଙ୍କ ଗୁରୁଥିଲେ ସର୍ବ
ସମରଥ ଗୁରୁ ଦ୍ରୋଣ,
ରାଜକୁମାରଙ୍କୁ ସାମରିକ କଳା
ଶିଖାନ୍ତି ଯେ ପ୍ରତିକ୍ଷଣ ।
ଭୀଷ୍ମଙ୍କ ନିକଟେ ପ୍ରତିଶ୍ରୁତିବଦ୍ଧ
ରାଜକୁମାର ବ୍ୟତୀତ,
ଅନ୍ୟ କାହାରିକୁ ଦେବେ ନାହିଁ ଶିକ୍ଷା
କରିଥିଲେ ସୁନିଶ୍ଚିତ ।
ରାଜପୁତ୍ର ବିନା ଶିଷ୍ୟ ରୂପେ ଅନ୍ୟ
କାହାରିକୁ ଆଶ୍ରମରେ,
କେବେବି ଗ୍ରହଣ କରୁ ନ ଥିଲେ ସେ
କୌଣସି ପରିସ୍ଥିତିରେ ।
ଦିନେ ବନବାସୀ ପିଲାଟିଏ ଆସି
ଗୁରୁ ଆଶ୍ରମେ ପହଞ୍ଚି,
ବୋଇଲା ଗୁରୁ ହେ ଶିଷ୍ୟ ହେବା ପାଇଁ
ଆସିଛି ମନରେ ପାଞ୍ଚି ।
ଧନୁର୍ବିଦ୍ୟା ମୋର ଶିଖିବାରେ ଇଚ୍ଛା
ଗୁରୁ ମଧ୍ୟେ ଶ୍ରେଷ୍ଠ ତୁମେ,
ମୋର ମନସାଧ ମେଣ୍ଟାଇ ଦିଅ ହେ
ପଡିବିନି ଆଉ ଭ୍ରମେ ।
ପ୍ରତିଶ୍ରୁତିବଦ୍ଧ ଗୁରୁ ବାଳକକୁ
ବୋଇଲେ ଧନ୍ୟ ତୋ ବୁଦ୍ଧି,
ଶିଷ୍ୟ ରୂପେ ତୋତେ ନେଇ ପାରିବିନି
ବଚନ ଦ୍ୱାରା ମୁଁ ବନ୍ଦୀ ।

ଗୁରୁ ପ୍ରତ୍ୟାଖ୍ୟାତ ଏକଲବ୍ୟ ଗୃହେ
ହତାଶାରେ ଫେରି ଯାଇ,
ତୀରନ୍ଦଜ କଳା ଶିଖିବାକୁ ମନ
ଟାଣ କଲେ ଦୃଢ ହୋଇ ।
ଗଢିଲା ଆଶ୍ରମ ଜଙ୍ଗଲର ପୁତ୍ର
ଘୋର ଜଙ୍ଗଲକୁ ଯାଇ,
ମାଟିମୂର୍ତ୍ତିଟିଏ ଗଢିଲା ସେଠାରେ
ଗୁରୁଦ୍ରୋଣ ରୂପ ଦେଇ ।
ମୃଣ୍ମୟୀ ମୂର୍ତ୍ତିକୁ ଗୁରୁ ମାନ୍ୟ କରି
ଚାଲୁ ରଖିଲେ ଅଭ୍ୟାସ,
ଦିନ ଦିନ ମିଶି ବିତିଗଲା ମାସ
ମାସ ହୋଇଲା ବରଷ ।
ବର୍ଷ ବର୍ଷ ଧରି ଅଭ୍ୟାସ କରିବା
ଫଳରେ ମିଳିଲା ଫଳ,
ଅସାମାନ୍ୟ ଧନୁ- ର୍ଦ୍ଧର ରୂପେ ସିଏ
ଜୀବନେ ହେଲେ ସଫଳ ।
କୌରବ ପାଣ୍ଡବ ରାଜକୁମାରଙ୍କୁ
ନେଇ ଦିନେ ଗୁରୁ ବନେ,
ତୀରନ୍ଦାଜ କଳା ଅଭ୍ୟାସ କରିବେ
ବୋଲି ଭାବି ମନେ ମନେ ।
ଖୋଲା ସ୍ଥାନ ଦେଖି ଅଭ୍ୟାସ କରାଇ
ପରୀକ୍ଷା ନେବା କାଳରେ,
ସାଥେ ଯାଇଥିବା ପୋଷା ଶ୍ୱାନ ଯାଇ
ପହଞ୍ଚିଲା ଆଶ୍ରମରେ ।

ଏକଲବ୍ୟ ଯହିଁ ଅଭ୍ୟାସ କରଇ
ବୃଥା କୋଳାହଳ ତହିଁ,
ଆଚରିଲା ଯେଣୁ କ୍ରୋଧେ ଏକଲବ୍ୟ
ଧନୁରେ ନାରାଚ ଥୋଇ ।
ବିନ୍ଧିଲା ସାତୋଟି ଏପରି କୌଶଳେ
ବାନ୍ଧିଲା ଶ୍ୱାନର ପାଟି,
ଭୁକି ନ ପାରିଣ ଅଭ୍ୟାସ ସ୍ଥାନକୁ
ଆସିଲା କଷ୍ଟେ ଲେଉଟି ।
ଏପରି ଅବସ୍ଥା ଦେଖିଣ ଶ୍ୱାନର
ଆଶ୍ଚର୍ଯ୍ୟ ହୋଇଲେ ଗୁରୁ,
କିଏ ଧନୁର୍ଦ୍ଧର ଅନନ୍ୟ କୌଶଳ
ଶିଖିଅଛି କେଉଁଠାରୁ ।
ଶିଷ୍ୟ ଗଣେ ନେଇ ସେହି ବୀରବର
କିଏ ଦେଖିବାକୁ ତା'ରେ,
ଅଭ୍ୟାସ ସ୍ଥାନରୁ ବାହାରିଲେ ସର୍ବେ
ଶ୍ୱାନ ଚଳଇ ଆଗରେ ।
ଦ୍ରୋଣାଚାର୍ଯ୍ୟ ସହ ଛାତ୍ରଗଣ ଶ୍ୱାନ
ପଛେ ପଛେ ଖୋଜି ଖୋଜି,
ଯାଇ ପହଞ୍ଚିଲେ ଏକଲବ୍ୟ ଯହିଁ
ଅଭ୍ୟାସରେ ଥିଲା ମଜ୍ଜି ।
ଦେଖି ଏମାନଙ୍କୁ ସଗର୍ବେ ପ୍ରକାଶ
କଲା ଆସି ସମ୍ମୁଖକୁ,
ଏ କାର୍ଯ୍ୟ ତାହାର କରିଛି ବନ୍ଧନ
ଶରରେ ଶ୍ୱାନ ମୁଖକୁ ।

ଗୁରୁ ଦ୍ରୋଣେ ପାଇ ସମ୍ମୁଖେ ଆନନ୍ଦ
ସାଗରେ ଅବଗାହନ,
କରି ବାରମ୍ବାର ଗୁରୁ ଚରଣରେ
କରିଲା ଭାବେ ବନ୍ଦନ ।
ଏକଲବ୍ୟେ ଗୁରୁ ଦ୍ରୋଣ ପ୍ରଶ୍ନ କଲେ
ଏହି ତୀରନ୍ଦାଜ କଳା,
ଶିଖିଲ କେଉଁଠୁ କୁହ ନିଃସଙ୍କୋଚେ
ଆହେ ଜଙ୍ଗଲର ବଳା ।
ମାଟି ପ୍ରତିମୂର୍ତ୍ତି ଦେଖାଇ କହିଲା
ଆପଣ ମୋ ଗୁରୁଦେବ,
ଆପଣଙ୍କ ପଦେ ଚିତ୍ତରଖି ମୁହିଁ
ପାଇଛି ଏ ଜ୍ଞାନ ଭାବ ।
ମୂଳରୁ ଘଟଣା ଘଟିଥିଲା ଯାହା
ପ୍ରକାଶିଲା ଗୋଟି ଗୋଟି,
ଦ୍ରୋଣାଚାର୍ଯ୍ୟ ମନ ହେଲା ଆନନ୍ଦିତ
ଏପରି ଶିଷ୍ୟକୁ ଭେଟି ।
ଆନନ୍ଦ ଭାବନା କ୍ଷଣକେ ଉଭେଇ
ମୁଖ ହେଲା ଦୁଃଖାଛନ୍ନ,
ପ୍ରିୟ ଶିଷ୍ୟଟିର ଭବିଷ୍ୟତ ଚିନ୍ତା
ମନକୁ କଲା ବିଷର୍ଣ୍ଣ ।
ଆଗକୁ ହୋଇବ ଜାଣିଥିଲେ ଗୁରୁ
ସମର ମହାଭାରତ,
ଉଚ୍ଚାଭିଳାଷୀ ଏ ସଫଳ ଶିଷ୍ୟର
କି ହୋଇବ ଭବିଷ୍ୟତ ।

ଦୁର୍ଯ୍ୟୋଧନ ନିଜ ସପକ୍ଷରେ ନେଇ
ପଠାଇବ ଯୁଦ୍ଧ କ୍ଷେତ୍ରେ,
ଯୁଦ୍ଧରେ ସତ୍ୟର ହୋଇବ ବିଜୟ
ମରିବ ଏ ସୁନିଶ୍ଚିତେ ।
ମୃତ୍ୟୁ କବଳରୁ ଶିଷ୍ୟର ସୁରକ୍ଷା
ସହ ଶିଷ୍ୟ ବଡ଼ପଣ,
ଦେଖାଇବେ ବୋଲି ସଂସାରରେ ଗୁରୁ
ଆଦରିଲେ ମନ୍ଦ ପଣ ।
ମନେ ମନେ ଚିନ୍ତା ଚେତନାରେ ଚିନ୍ତି
ଶିଷ୍ୟ ଯଶ ଶିଷ୍ୟ ଖ୍ୟାତି,
ବୋଇଲେ ଦକ୍ଷିଣା ବିନା ନିରର୍ଥକ
ଶିକ୍ଷା ହୋଇବନି ପ୍ରାପ୍ତି ।
ଏକଲବ୍ୟ ଚାହିଁ ଗୁରୁଙ୍କୁ କହିଲା
ହେ ଗୁରୁ ଆଦେଶ କର,
ଯାହା ମାଗିବ ମୁଁ ଦେବାକୁ ପ୍ରସ୍ତୁତ
ସତ୍ୟ କରୁଛି ତ୍ରିବାର ।
ଡାହାଣ ହାତର ବୁଢ଼ା ଆଙ୍ଗୁଠିଟି
ଗୁରୁ ଦକ୍ଷିଣା ରୂପରେ,
କର ଅରପଣ ଅନ୍ୟେ ନାହିଁ ଇଛା
ଦ୍ୱିଧା ନ ରଖ ହୃଦରେ ।
ଶ୍ରବଣ ମାତ୍ରକେ ବିନା ବିଚାରରେ
ଡାହାଣ ଆଙ୍ଗୁଠି କାଟି,
ଗୁରୁଙ୍କ ପୟରେ ମନ ହରଷରେ
ଏକଲବ୍ୟ ଦେଲା ଭେଟି ।

ଶିଷ୍ୟର ସୁରକ୍ଷା ଭାବନାରେ ସିକ୍ତ
ଦ୍ରୋଣାଚାର୍ଯ୍ୟ ଏକଲବ୍ୟେ,
ବୋଇଲେ ହେ ବତ୍ସ ! ଗୁରୁଭକ୍ତି ତୁମ
ଅମର ହୋଇବ ଭବେ ।
ଯେତେଦିନ ଯାଏଁ ଥିବ ଗୁରୁଶିଷ୍ୟ
ପରମ୍ପରା ସଂସାରରେ,
ସେତେକାଳ ଯାଏଁ ଶୋଭା ପାଉଥିବ
ତୁମ ନାମ ସ୍ୱର୍ଣ୍ଣାକ୍ଷରେ ।
ଗୁରୁ ଗୁରୁ ବାକ୍ୟ ପ୍ରତି ଶ୍ରଦ୍ଧା ଭକ୍ତି
ବିଶ୍ୱାସ ନିମନ୍ତେ ତୁମ,
ସାରା ବ୍ରହ୍ମାଣ୍ଡରେ ପରିଚିତ ହେବ
ଅମର ହୋଇବ ନାମ ।



# ଭଗବାନ ପର୍ଶୁରାମ ଓ କର୍ଣ୍ଣ

ଷଷ୍ଠ ଅବତାର ରେଣୁକା କୁମର
ପର୍ଶୁରାମ ଭଗବାନ,
ଏକୋଇଶ ବାର ପୃଥ୍ୱୀ ନିକ୍ଷତ୍ରୀୟ
କଲେ ମାରି ରାଜାଗଣ ।
କ୍ଷତ୍ରିୟ ତାଙ୍କର ଶତ୍ରୁ ଥିଲେ ଯେଣୁ
ବ୍ରାହ୍ମଣ ବାଳକ ଗଣେ,
ଶିକ୍ଷା ଦେବା ପାଇଁ ମନରେ ଶପଥ
କରିଥିଲେ ବଡ଼ ଟାଣେ ।
ସୂତ ପୁତ୍ର ହେତୁ ଗୁରୁ ଦ୍ରୋଣ ଦ୍ୱାରା
ହେଲେ ଯେବେ ପ୍ରତ୍ୟାଖ୍ୟାତ,
ଉଚ୍ଚ ଅଭିଳାଷି କର୍ଣ୍ଣ ଆଗେ ହେଲେ
ପର୍ଶୁରାମ ପ୍ରତିଭାତ ।
ଅଦ୍ୱିତୀୟ ଗୁରୁ ଉଚ୍ଚତର ଶସ୍ତ୍ର
ଶିକ୍ଷା ଦେବାରେ ସକ୍ଷମ,
ସଂସାରେ ବିରଳ ଶିଖେଇବ ଯିଏ
ସଦ୍‌ଗୁରୁ ତାଙ୍କ ସମ ।
ଅନ୍ତରାୟ ଏକ ଥିଲା ସମ୍ମୁଖରେ
ବ୍ରାହ୍ମଣ ବିନା ଅନ୍ୟକୁ,
ଶିକ୍ଷା ଦେବେ ନାହିଁ ଶପଥ ତାଙ୍କର
ଅନ୍ୟ ଜାତିର କାହାକୁ ।
କର୍ଣ୍ଣ ମନେ ମନେ ନିଶ୍ଚିତ ହୋଇଲେ
ଯଦି ଶସ୍ତ୍ର ସେ ଶିଖିବେ,
ପର୍ଶୁରାମ ପରି ଗୁରୁ ଛାଡ଼ି କିମ୍ବା
ଅନ୍ୟ କା' ପାଶକୁ ଯିବେ ।

ବିଦ୍ୟା ଗ୍ରହଣର ଝୁଙ୍କ ତାଙ୍କ ମନ
ଚେତନାକୁ ଆବୋରିଲା,
ବିଦ୍ୟା ଶିକ୍ଷା ଆଗେ କର୍ତ୍ତବ୍ୟାକର୍ତ୍ତବ୍ୟ
ସବୁ ଫିକା ପଡ଼ିଗଲା ।
ବ୍ରାହ୍ମଣ ରୂପରେ ଛଦ୍ମବେଶ ଧରି
ମିଳିଲେ ପରଶୁ ରାମେ,
ବୋଇଲେ ହେ ଗୁରୁ ଶିଷ୍ୟ ରୂପେ ମୋତେ
ଗ୍ରହଣ କର ଆଶ୍ରମେ ।
ବ୍ରାହ୍ମଣ କି ନୁହେଁ ଜାଣିବାକୁ ଗୁରୁ
ପ୍ରଶ୍ନର ଚାହିଁଲେ ପୁଷ୍ଟି,
ମିଥ୍ୟାର ଆଶ୍ରୟେ ପ୍ରଚଣ୍ଡ ପ୍ରତିଭା
କର୍ଣ୍ଣ କଲେ ତାଙ୍କୁ ତୁଷ୍ଟି ।
ଲକ୍ଷ୍ୟ ହାସଲର ଯିଦି ଆଗେ ବନ୍ଧା
ପଡ଼ିଗଲା ନୈତିକତା,
ସତ୍ୟ ଆଗେ ମିଥ୍ୟା ପାଇଲା ବିଜୟ
ମିଳିଗଲା ସଫଳତା ।
ବ୍ରାହ୍ମଣ ବାଳକ ମନେକରି ଗୁରୁ
କର୍ଣ୍ଣକୁ ଶିଷ୍ୟ ରୂପରେ,
ଗ୍ରହଣ କରିଲେ ଧୋକା ଖାଇ ଗୁରୁ
ହାରିଲେ ମିଥ୍ୟା ଆଗରେ ।
ନିଜ ବ୍ୟବହାର ଚାଲିଚଳନରେ
ପ୍ରବଳ ଧୀଶକ୍ତି ବଳେ,
ପରଶୁରାମଙ୍କ ଠାରୁ ଶସ୍ତ୍ର ବିଦ୍ୟା
ଶିଖିଲେ କର୍ଣ୍ଣ କୌଶଳେ ।

ଗୁରୁ ପର୍ଶୁରାମ କର୍ଣ୍ଣପରି ଜଣେ
ମେଧବୀ ଶିଷ୍ୟକୁ ପାଇ,
ଅକାତରେ ପାଶେ ଯେତେ ବିଦ୍ୟା ଥିଲା
ସମସ୍ତ ଦେଲେ ଶିଖାଇ ।
ବିଦାୟ ସମୟ ପାଖେଇ ଆସିଲା
ବିଦ୍ୟା ଶିକ୍ଷା ପରେ ଯେବେ,
ଶିଷ୍ୟର ଅନ୍ତିମ ପରୀକ୍ଷା ନେବାକୁ
ଗୁରୁ ଇଚ୍ଛା କରି ତେବେ ।
ସାଥିରେ କର୍ଣ୍ଣଙ୍କୁ ଧରି ଗୁରୁ ଗଲେ
ଆଶ୍ରମରୁ କିଛି ଦୂରେ,
ପଥଶ୍ରମ କଷ୍ଟ ଲାଘବ ନିମନ୍ତେ
ଚଳିଲେ ବୃକ୍ଷ ମୂଳରେ ।
ବିଶ୍ରାମ ନେବାକୁ ବସୁ ବସୁ ଯାଇ
କ୍ଳାନ୍ତିରୁ ଆସିଲା ତନ୍ଦ୍ରା,
କର୍ଣ୍ଣ ଜଙ୍ଘପରେ ଶିର ଥୋଉ ଥୋଉ
ଅଖିକୁ ଘୋଟିଲା ନିଦ୍ରା ।
ନିଘୋଡ଼ ନିଦରେ ଗୁରୁଙ୍କୁ ଶୋଇବା
ଦେଖି କର୍ଣ୍ଣ ସାକ୍ଷାତରେ,
ସତର୍କ ରହିଲେ ସାମାନ୍ୟ ବ୍ୟାଘାତ
ହେବନି ଯେହ୍ନେ ସେଠାରେ ।
ଏହି ସମୟରେ ଗୋବର କୀଟେକ
କାହୁ କର୍ଣ୍ଣ ଜଙ୍ଘ ତଳେ,
ପଶିଲା କିଛି ସେ ବୁଝିବା ଆଗରୁ
ସଧିରେ ଦୁର୍ଭାଗ୍ୟ ବଳେ ।

ଗୁରୁଙ୍କ ନିଦ୍ରାରେ ଯେପରି ବ୍ୟାଘାତ
ସୃଷ୍ଟି ନ ହେବା ଲକ୍ଷ୍ୟରେ,
ଧୈର୍ଯ୍ୟ ଧରି କର୍ଣ୍ଣ ରହିଲେ ବସିକି
ଅବିଚଳିତ ଭାବରେ ।
ଦଇବ ନିର୍ଦ୍ଦେଶେ ଗୁରୁଙ୍କ ଇଙ୍ଗିତେ
ପୋକଟି ଜଙ୍ଘକୁ ତା'ର,
କାଟିବାରୁ କର୍ଣ୍ଣ ଜଙ୍ଘରୁ ବହିଲା
ଅବାରିତରେ ରୁଧିର ।
ଅତିଶୟ କଷ୍ଟ ବ୍ୟତିବ୍ୟସ୍ତ କଲା
ଯଦିଓ ତାଙ୍କର ମନ,
ତଥାପି ଦୃଢ଼ତା ସହକାରେ ଧୈର୍ଯ୍ୟ
ଧରି କରିଲେ ସହନ ।
ରକ୍ତ ବହି ମାଟି ବସନ ତିନ୍ତିଲା
ପୋକ ଦୌରାତ୍ମରେ ହ୍ରାସ,
ଲକ୍ଷଣ ନ ଦିଶେ ଶୋଣିତ ଗୁରୁଙ୍କ
ଶରୀରକୁ କଲା ସ୍ପର୍ଶ ।
ଗୁରୁ ତତକ୍ଷଣ ନିଦ୍ରା ତେଜି ଉଠି
ଦେଖିଲେ ରକ୍ତ ସର୍ବତ୍ର,
କାରଣ ପଚାରି ସମ୍ପୂର୍ଣ୍ଣ ଘଟଣା
ସମ୍ପର୍କେ ହୋଇଲେ ଜ୍ଞାତ ।
ଶିଷ୍ୟ ଧୈର୍ଯ୍ୟ ଶକ୍ତି ଦେଖିଣ ଆଶ୍ଚର୍ଯ୍ୟ
ଚକିତ ହୋଇଲେ ଗୁରୁ,
ପୁଚ୍ଛିଲେ କିଏ ତୁ ଖୋଲି କହ ମୋତେ
ବ୍ରାହ୍ମଣ ନୁହେଁ ଜମାରୁ ।

ବ୍ରାହ୍ମଣ ପାଶରେ          ସହନ ଶକତି
ଏତେ ସମ୍ଭବ ନୁହଁଇ,
କର୍ଣ୍ଣ ସବୁକଥା          ପ୍ରକାଶ କରିଲେ
ଗୁରୁ ଆଗେ ବାଧ୍ୟ ହୋଇ ।
କେଉଁ ପରିସ୍ଥିତି          ନିମନ୍ତେ ମିଥ୍ୟାର
ଆଶ୍ରୟ ସେ ନେଇ ଥିଲେ,
ଗୋଟି ଗୋଟି କରି          ପର୍ଶୁରାମଙ୍କର
ସମ୍ମୁଖରେ ବଖାଣିଲେ ।
ଯେତେ ପ୍ରକାରରେ          ବୁଝେଇଲେ କର୍ଣ୍ଣ
କୌଣସି ପ୍ରଭାବ ତା'ର,
ଗୁରୁଙ୍କ ଉପରେ          ପଡ଼ିଲାନି ଜମା
ବଢ଼ିଲା ରୋଷ ତାଙ୍କର ।
ବୈଦ୍ୟ, ଗୁରୁ ରାଜା          ଆଗରେ ମିଥ୍ୟା ଯେ
କହେ ଦୁର୍ବୁଦ୍ଧି ବଶତ,
ଶରୀର ଧରମ          ଜୀବନ ତାହାର
ଅକାଳରେ ହୁଏ ଅନ୍ତ ।
ମିଥ୍ୟାର ଆଶ୍ରୟ          ନେଇ ଏତେଦିନ
ଗୁରୁଙ୍କୁ ରଖି ଅନ୍ଧାରେ,
ଛଦ୍ମ ଆଚରଣ          କରି ଘୋର ପାପ
ଅରଜିଛ ଅନୀତିରେ ।
ମୋ ପାଶେ ଯେପରି          ଛଦ୍ମ ଆଚରଣ
କରି ଦିବ୍ୟାସ୍ତ୍ର ବ୍ରହ୍ମାସ୍ତ୍ର,
ହାସଲ କରିଛ          କରିବ ସେପରି
ତୁମ ସହିତ ତା' ମନ୍ତ୍ର ।

ଉପଯୁକ୍ତ କାଳେ  ଅସ୍ତ୍ର ଗୁଡ଼ିକର
ମନ୍ତ୍ର ହେବ ବିସ୍ମରଣ,
ଅଭିଶାପ ମୋର  ମିଥ୍ୟାଚାର ଫଳ
ଭୋଗକରିବ ସେ କ୍ଷଣ ।
ଗୁରୁଙ୍କ ଚରଣ  ତଳେ ପଡ଼ି କର୍ଣ୍ଣ
ବହୁତ ବିନତୀ କଲେ,
ନିଜ ଜୀବନର  ବାସ୍ତବତା ସହ
ପରିଚିତ କରାଇଲେ ।
ଗୁରୁଙ୍କର ଦୁଇ  ଚରଣ ଜାବୋଡ଼ି
ଧରି କରିଲେ କ୍ରନ୍ଦନ,
ବୋଇଲେ ଗୁରୁ ହେ  ଖେଳିଛି ମୋ ସହ
ବିଧାତା ମୁଁ ଭାଗ୍ୟହୀନ ।
ଜନ୍ମ ମୋର ଦୈବ  ଅଧିନରେ ଥିଲା
ଜୀବନ ସାରା ତା' ପାଇଁ,
ଦ୍ୱାର ଦ୍ୱାର ମୋତେ  ବୁଲିବାକୁ ହେଲା
ପୌରୁଷ ପାଖରେ ଥାଇ ।
ସୂତପୁତ୍ର ହୋଇ  ଜନମ ନେବାରେ
ମୋର କି ହୋଇଲା ଦୋଷ,
ସାମର୍ଥ୍ୟ ଥାଇବି  କଉଣସି ଗୁରୁ
କରିଲେନି ମୋତେ ଶିଷ୍ୟ ।
ଏଥିରେ ଦୋଷ ମୋ  କେଉଁଠି ରହିଲା
ଗୁରୁ କ୍ଷମ କ୍ଷମା ଗୁଣେ,
ଏ ଅଧମ ପ୍ରତି  କଠୋର ନ ହୋଇ
କୃପା କର ବାରେ କଣେ ।

ଦୋଷ ମୋର ମାତ୍ର ଏତିକି ପାଗଳ
ମୁଁ ଜ୍ଞାନ ହାସଲ ପାଇଁ,
ଜ୍ଞାନ ପ୍ରାପ୍ତି ପାଇଁ ସୂତପୁତ୍ର ବୋଲି
ଅଧିକାର ମୋର ନାହିଁ ?
କର୍ଣ୍ଣଙ୍କ ରୋଦନ ଦୁଃଖଦ ଜୀବନ
ଶୁଣି ଗୁରୁଙ୍କ ହୃଦୟ,
ହେଲା ଦ୍ରବିଭୁତ କହିଲେ ବତ୍ସ ତୋ
କରମ ଅକ୍ଷମଣୀୟ ।
ବ୍ୟର୍ଥ ହେବ ନାହିଁ ମୋର ଅଭିଶାପ
କିନ୍ତୁ ତୁମ ଗୁରୁଭକ୍ତି,
ଅନ୍ୟ ପାଶେ କେବେ ଦେଖି ନାହିଁ ତୁମ
ପ୍ରୀତି ବିଦ୍ୟା ପ୍ରାପ୍ତି ପ୍ରତି ।
ଯେତେ ଭୁଲ କଲେ ଗୁରୁ ଶିଷ୍ୟ ପ୍ରତି
ଆଚରେନା କଠୋରତା,
ତୁମ ଶିଷ୍ୟପଣ ପ୍ରଦାନ କରିଛି
ମୋର ହୃଦେ ବିବଶତା ।
ଦେଉଛି ତୁମକୁ ଭଗବାନ ଶିବ
ପ୍ରଦତ୍ତ ବିଜୟ ଧନୁ,
ହସ୍ତେ ଧରିଥିଲେ ସଂସାରେ ସମସ୍ତେ
ହେବେ ଆଗେ ନତଜାନୁ ।
ଏହାକୁ ନିହାତି ଆବଶ୍ୟକ ସ୍ଥଳେ
କରିବ ତୁମେ ପ୍ରୟୋଗ,
ଯାଅ ନିର୍ଭୟରେ ଖୋଲି ଦିଅ ନିଜ
ଉନ୍ନତିର ବନ୍ଦ ମାର୍ଗ ।



# ଗୁରୁ ସନ୍ଦିପନି ଓ ଶ୍ରୀକୃଷ୍ଣ

ଶିକ୍ଷା ଲାଭ ପାଇଁ ବାଳକ ଶ୍ରୀକୃଷ୍ଣ
ସାଥେ ନେଇ ବଳରାମ
ପହଞ୍ଚିଲେ ଯାଇ ମହାନ ଗୁରୁଜୀ
ସନ୍ଦିପନିଙ୍କ ଆଶ୍ରମ ।
ମୁନି ମୁନି ପତ୍ନୀ ଆଗ୍ରହ ସହିତ
ଗ୍ରହଣ କଲେ ଦୁହିଁଙ୍କୁ,
ଗୁରୁକୁଳାଶ୍ରମ ଧନ୍ୟ ମନେ କଲା
କୋଳେ ପାଇ ଶ୍ରୀକୃଷ୍ଣଙ୍କୁ ।
ସାରା ସଂସାରର ଜ୍ଞାନ ଗନ୍ତାଘର
ଶାସ୍ତ୍ରେ ବସନ୍ତି ଯା' ଦେହେ,
ଲୋକ ଶିକ୍ଷା ଅର୍ଥେ ଗୁରୁଙ୍କ ନିକଟେ
ପଢ଼ିଲେ ସିଏ ଆଗ୍ରହେ ।
ଦିନ ଅଠରରେ ବେଦୋପନିଷଦ
ଦର୍ଶନ ପୁରାଣ ନୀତି,
ଶାସ୍ତ୍ରାଦି ପଠନ କରି ସମ୍ପୂର୍ଣ୍ଣତା
ଅଚିରେ କରିଲେ ପ୍ରାପ୍ତି ।
ଶିକ୍ଷା ଶେଷ ପରେ ଗୁରୁ ଡାକି ପାଶେ
ବୋଇଲେ ହେ କୃଷ୍ଣ ରାମ,
ପାଠପଢ଼ା ଏବେ ସମାପ୍ତ ହୋଇଲା
ଫେର ତେଜିଣ ଆଶ୍ରମ ।
ଗୁରୁଙ୍କ ପାଖରୁ ଏପରି ନିର୍ଦ୍ଦେଶ
ପାଇ ଯାଇ ଦୁଇ ଭାଇ,
କହିଲେ ବିନମ୍ରେ କରିବେ ସନ୍ତୁଷ୍ଟ
ଗୁରୁଙ୍କୁ ଦକ୍ଷିଣା ଦେଇ ।

ଶୁଣି ସନ୍ଦିପନି ବୋଇଲେ ବାଳକେ
କି ଦକ୍ଷିଣା ତୁମେ ଦେବ,
ଶ୍ରୀକୃଷ୍ଣ କହିଲେ ଆପଣଙ୍କ ଇଚ୍ଛା
ଯାହା ଆଦେଶ ହୋଇବ ।
ଗୁରୁ କିଛି ନିଜେ କହିବା ପୂର୍ବରୁ
ଗୁରୁପତ୍ନୀ ଆସି ଆଗେ,
ପ୍ରକାଶିଲେ ହୃଦେ ସଂଚିତ ଦୁଃଖକୁ
ଜଗତନାଥଙ୍କୁ ବେଗେ ।
ଏକମାତ୍ର ପୁତ୍ର ପୁନର୍ଦତ ମୋର
ପ୍ରଭାସ ତର୍ଥକୁ ଗଲା,
ସାଗର ସ୍ନାହାନ ପାଇଁ ଗଲା ପୁତ୍ର
ଆଜି ଯାଏଁ ନ ଫେରିଲା ।
ଦୀର୍ଘଦିନ ଧରି ଆସିବା ପଥକୁ
ତାହାର ବସିଛୁ ଚାହିଁ,
ଆଖିପାଣି ଆମ ଆଖିରେ ମଲାଣି
ଦର୍ଶନ ତା’ ମିଳୁ ନାହିଁ ।
ତୁମ୍ଭେମାନେ ଯଦି ଦକ୍ଷିଣା ଗୁରୁଙ୍କୁ
ଦେବାକୁ କରୁଛ ଇଚ୍ଛା,
ମୋ ଗଲା ପୁତ୍ରକୁ ବାହୁଡ଼ାଇ ଆଣ
ଅର୍ଜନ କର ସଦିଚ୍ଛା ।
ଅନ୍ୟ ଦକ୍ଷିଣାରେ ଲୋଡ଼ା ନାହିଁ ମୋର
ତୁମ୍ଭ ପରେ ମୁହିଁ ଖୁସି,
ଗୃହେ ଫେରି ଯାଅ ଆନନ୍ଦ ମନରେ
ଦେବକୀ ହୃଦୟ ଶଶି ।

ଗୁରୁ ଆଶୀର୍ବାଦ          ନେଇ ପୁନର୍ବତେ
ଫେରାଇ ଆଣିବା ପାଇଁ,
ପ୍ରଭାସ ତୀର୍ଥରେ          ଅତିଶୀଘ୍ର ଯାଇ
ପହଞ୍ଚିଲେ ଦୁଇ ଭାଇ ।
ଭ୍ରାତୃଦ୍ୱୟେ ଦେଖି          ବରୁଣ ଦେବତା
ଭୟେ ହୋଇ କମ୍ପମାନ,
ବୋଲେ ଘୋର ଜଳେ     ଶଙ୍ଖେ ଦୈତ୍ୟ ଏକ
କରିଛି ଆତ୍ମ ଗୋପନ ।
ମନେ ହୁଏ ମୋର          ଗୁରୁପୁତ୍ରଙ୍କୁ ସେ
କରି ଦେଇଛି ଭକ୍ଷଣ,
ଦୟାକରି ସେହି          ଦୈତ୍ୟ ସମ୍ମୁଖିନ
ହୁଅନ୍ତୁ ଥରେ ଆପଣ ।
ଶୁଣି ଦୁଇଭାଇ          ଶଙ୍ଖ ଦୈତ୍ୟ ପାଶେ
ପହଞ୍ଚି ଦେଲେ ଆହ୍ୱାନ,
ଶଙ୍ଖ ମଧ୍ୟେ ଥିଲା          ଆରାମରେ ଦୈତ୍ୟ
ନାମ ତା'ର ପଞ୍ଚଜନ୍ୟ ।
ଆହ୍ୱାନାକର୍ଷଣେ          ବାହାରକୁ ଆସି
ଭୀଷଣ ଗର୍ଜନ କରି,
ଆକ୍ରମଣ କଲା          ପ୍ରଚଣ୍ଡ ଭାବରେ
ବ୍ରହ୍ମାଣ୍ଡ ପତି ମୁରାରି ।
ଯୁଦ୍ଧେ କରି ହତ   ଶଙ୍ଖ ଧରି ହସ୍ତ
ନପାଇ ଗୁରୁ ପୁତ୍ରକୁ,
ଅବିଳମ୍ବେ ଦୁହେଁ          ଚଳିଲେ ନିଦ୍ୱନ୍ଦ୍ୱେ
ଜନ୍ତୁପତିଙ୍କ ପାଖକୁ ।

ଯମରାଜ ଦୁଇ ଭ୍ରାତାଙ୍କୁ ପାଖରେ
ପାଇ କରି ବହୁ ଭକ୍ତି,
ପୁଛାକଲେ କେଉଁ କାରଣେ ଆସିଛ
ଯମ ଆଳୟେ ଶ୍ରୀପତି ।
ଗୁରୁପୁତ୍ର କଥା ପ୍ରକାଶ କରନ୍ତେ
ଯମ ହୋଇଲେ ଚିନ୍ତିତ,
କ୍ଷଣେ ଚିନ୍ତା କରି ବୋଇଲେ ସୃଷ୍ଟିର
ନିୟାମକ ଆପଣ ତ ।
କି କହିବି ମୁହିଁ ଆପଣଙ୍କ ଇଛା
ପୂରଣ କରିବା ପାଇଁ
ଏହି ମୂହୂର୍ତ୍ତରେ ପୁନର୍ଦତକୁ ମୁଁ
ଦେଉଛି ସାଥେ ପଠାଇ ।
ନୂତନ ଜୀବନ ପୁନର୍ଦତେ ଦେଇ
ଗୁରୁ ଅଶ୍ରମକୁ ଫେରି,
ଗୁରୁ ଗୁରୁପତ୍ନୀ ପାଶରେ ସମର୍ପି
ଦୁଃଖ ହରି ନେଲେ ହରି ।
ପୁତ୍ରେ ଫେରି ପାଇ ସନ୍ଦିପନି ମୁନି
ପତ୍ନୀ ସହ ଆନନ୍ଦିତ,
କୃଷ୍ଣ ବଳରାମେ ଦୁହେଁ ଖୁସିମନେ
ଗାଢ଼େ କଲେ କୋଳାଗ୍ରତ ।
କୃତ୍ୟ କୃତ୍ୟ ହୋଇ ଗୁରୁଙ୍କ ନେତ୍ରରୁ
ଅବାରିତେ ବହେ ନୀର,
ବୋଇଲେ ତୁମ୍ଭର ଏ ଗୁରୁ ଦକ୍ଷିଣା
ହୋଇ ରହିବ ଅମର ।

ଆଶୀର୍ବାଦ ମୋର ତୁମ ସହିତରେ
ସଦାକାଳେ ରହିଥିବ,
ଗୁରୁକୃପା ବଳେ ଅସାଧ୍ୟ ସାଧନ
ସଂସାରେ ତୁମେ କରିବ ।
ଯେଉଁ ଶିଷ୍ୟ ଗୁରୁ ମନ ଜାଣି କାର୍ଯ୍ୟ
ହୃଦୟ ସହ କରଇ,
ଜୀବନରେ ତାକୁ ଶ୍ରେଷ୍ଠସ୍ଥାନ ଗୁରୁ
ପ୍ରସାଦୁ ପ୍ରାପ୍ତ ହୁଅଇ ।





# ଆଜ୍ଞାବହ ଆରୁଣୀ

କେବଳ ଗୁରୁଙ୍କ ନିର୍ଦ୍ଦେଶ ପାଳନ
କରିବା ବଳେ କିପରି,
ଜୀବନେ ସଫଳ ହୁଏ ଅକ୍ଳେଶରେ
ସର୍ବଜ୍ଞାନ ପ୍ରାପ୍ତ କରି ।
ଶିଷ୍ୟ ସ୍ୱୟଂ କରେ ଉତ୍ତମ ଶିଷ୍ୟରେ
ନିଜକୁ ପ୍ରତିପାଦିତ,
ଉଦାହରଣ ତା’ ଆରୁଣୀ ସଂସାରେ
ନାମ ଯାହାର ବିଖ୍ୟାତ ।
ପାଞ୍ଚ ବର୍ଷ ଯେବେ ବୟସ ହୋଇଲା
ପିତା ମାତା ସଙ୍ଗେ ନେଇ,
ସମର୍ଥ ମହର୍ଷି ଧୌମ୍ୟଙ୍କ ଆଶ୍ରମେ
ଛାଡ଼ିଲେ ପଢ଼ିବା ପାଇଁ ।
ସେଇଠି ରହିବା ସେଇଠି ଖାଇବା
ଗୁରୁଙ୍କ ସେବା କରିବା,
କୃଷିକ୍ଷେତ୍ରେ କୃଷି ଜଙ୍ଗଲରୁ କାଠ
ସଂଗ୍ରହ ଗୋରୁଙ୍କ ସେବା ।
ସାଧାରଣ ଭାବେ ବଞ୍ଚିବା ନିମନ୍ତେ
ସମାଜରେ ଆବଶ୍ୟକ,
ଶିକ୍ଷ୍ୟେ ଧୁରନ୍ଧର କରନ୍ତି ଶିଖାଇ
ଗୁରୁ କୌଶଳ ଯେତେକ ।
ସମସ୍ତ ପ୍ରକାର ଜ୍ଞାନ ଲାଭ ପରେ
ସର୍ବ ସମରଥ ହୋଇ
ଆସୁଥିଲା ଶିଷ୍ୟ ବାସ୍ତବ ଜୀବନ
ସଂସାରେ ବଞ୍ଚିବା ପାଇଁ ।

ଗୁରୁ ଧୌମ୍ୟଙ୍କର ଆଶ୍ରମରେ ଶିକ୍ଷା
ଗ୍ରହଣ କରିବା ପାଇଁ,
ଆରୁଣି ସେଠାରେ ଅବସ୍ଥାନ ଶିଷ୍ୟ
ରୂପେ କରୁଥିଲେ ଯାଇ ।
ଗୁରୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ
ଆଶ୍ରମ କୃଷି କ୍ଷେତ୍ରରେ,
ଧାନଚାଷ ହୋଇ ଥିଲା ବର୍ଷାଦିନେ
ଶିଷ୍ୟଙ୍କ ସହଯୋଗରେ ।
ଫସଲ କ୍ଷେତର ରକ୍ଷଣାବେକ୍ଷଣା
ଅତି ଯତ୍ନର ସହିତ,
କରାଯାଇଥିବା ଦେଖି ଗୁରୁଦେବ
ମନ ହୋଇଥିଲା ପ୍ରୀତ ।
ଭାବୁଥିଲେ ଖାଦ୍ୟ ନିମନ୍ତେ ଚଳିତ
ବର୍ଷ ଆଉ ରାଜା ପରେ,
ନିର୍ଭର କରିବା ଦର୍କାର ଦେବନି
ଅମଳ ହେଲେ ଭଲରେ ।
ଈଶ୍ୱରଙ୍କ ଇଛା ମଣିଷର ଚିନ୍ତା
ସର୍ବଦା ନୁହେଁ ସମାନ,
ଗୁରୁଙ୍କ ଚିନ୍ତାର ବିପରୀତେ ବର୍ଷା
ହେଲା ତହିଁ ଏକ ଦିନ ।
ପାଖ ପାହାଡ଼ରୁ ବହୁ ପରିମାଣ
ବରଷା ସଲିଳ ଆସି,
ବୁଡ଼ାଇ ଭାଙ୍ଗିଲା ହିଡ଼ଗଡ଼ି ଯେତେ
ଧାନ କ୍ଷେତ ମଧ୍ୟେ ପଶି ।

ବର୍ଷା ଉଗ୍ରରୂପ ଦେଖି ଗୁରୁବର
ପ୍ରମାଦ ଗଣିଲେ ମନେ,
ହିଡ଼ଭାଙ୍ଗି ପାଣି ନିଗିଡ଼ି ତଳକୁ
ଚଳିବ ଯଦି ନବିଘ୍ନେ ।
ପାଣି ସ୍ରୋତେ କିଛି ଫସଲ ଉଜୁଡ଼ି
ଅମଳେ ବାଧକ ହେବ,
ବଳକା ଫସଲ ଜଳ ଅଭାବରେ
ଆପେ ଆପେ ମରିଯିବ ।
ଭବିଷ୍ୟତ ଚିତ୍ର ଆଙ୍କି ଗୁରୁ ଧୌମ୍ୟ
ମନେ ହୋଇଲେ ଶଙ୍କିତ,
ଆରୁଣୀକୁ ପାଶେ ଡକାଇ କହିଲେ
ଯାଅ ବାବୁରେ ତ୍ବରିତ ।
ଦେଖିବ ଜମିର ହିଡ଼ ଭାଙ୍ଗିଛି କି
ଭାଙ୍ଗିଥିଲେ ବନ୍ଧେଇବ,
ଜମି ପାଣି ଯେହ୍ନେ ଖାଲି ନ ହୋଇବ
ସେଥି ପ୍ରତି ଦୃଷ୍ଟି ଦେବ ।
ବିନା ବାକ୍ୟ ବ୍ୟୟେ ଯଥାଶୀଘ୍ର ଜମି
ପାଶେ ଆରୁଣୀ ପହଁଚି,
ଦେଖିଲା ପ୍ରବଳ ବେଗେ ବର୍ଷାପାଣି
ତଳକୁ ବହି ଯାଉଛି ।
ପାଣି ସ୍ରୋତେ ହିଡ଼ ଯାଇଅଛି ଭାଙ୍ଗି
ମୁହାଣ ପଡ଼ିଛି ଖୋଲା,
ସବୁ ସ୍ରୋତେ ଗଲା ଭାସି ଯେତେ ମାଟି
ଆଣି ମୁହାଣରେ ଦେଲା ।

ନିଜର ସମସ୍ତ ପ୍ରଚେଷ୍ଟା ବିଫଳ
ହେବାର ଦେଖି ଆରୁଣୀ,
ନିରୁ ପାୟ ହୋଇ ଶୋଇଲା ମୁହାଣେ
ଅଟକାଇବାକୁ ପାଣି ।
ଦିନ ଶେଷ ହୋଇ ଅନ୍ଧାର ଘନେଇ
ରାତି ହୋଇଲା ପ୍ରବେଶ,
ପ୍ରାର୍ଥନା ସଭାରେ ଏକତ୍ରିତ ହେଲେ
ଗୁରୁ ସହ ସବୁ ଶିଷ୍ୟ ।
ଗୁରୁଙ୍କର ଆଖି ଖୋଜୁଥିଲା ସ୍ୱୟଂ
ଶିଷ୍ୟ ମଧ୍ୟେ ଆରୁଣୀକୁ,
ଧାନ କିଆରିର ଅବସ୍ଥା କିପରି
ଅଛି ବୋଲି ଜାଣିବାକୁ ।
ଆରୁଣୀକୁ ସେଠି ନପାଇ ଗୁରୁଙ୍କ
ମନ ହୋଇଲା ଚିନ୍ତିତ,
ଘଟିଲାକି କିଛି ଅଘଟଣ କ୍ଷେତେ
ଅସ୍ଥିର ହୋଇଲା ଚିତ୍ତ ।
କି କରିବେ ବୋଲି ବାଟ ନ ମିଳଇ
ଅନ୍ଧାର ଆସେ ଘନେଇଁ,
ବିଳମ୍ବ ନକରି କୃଷି କ୍ଷେତ୍ର ଦିଗେ
ଚଳିଲେ ଖୋଜିବା ପାଇଁ ।
ସାଥିରେ ମଶାଲ ଧରି କିଛି ଶିଷ୍ୟ
ସଙ୍ଗେ ଥିଲେ ଗୁରୁଙ୍କର,
ଡାକିଲେ ବିଭିନ୍ନ ଦିଗେ ଉଚ୍ଚସ୍ୱରେ
ମିଳିଲା ନାହିଁ ଉତ୍ତର ।

ତନ୍ନ ତନ୍ନ କରି ହୁଡ଼ାରୁ ହୁଡ଼ାକୁ
ବୁଲି ଖୋଜୁ ଖୋଜୁ କ୍ଷେତେ,
ଏକ ମୁହାଣରେ ଶୋଇଛି ଆରୁଣୀ
ଗୁରୁ ଦେଖିଲେ ଅଚେତେ ।
ଶିଷ୍ୟ ମାନଙ୍କର ସହଯୋଗ ବଳେ
ପାଣିରୁ ତାକୁ ଉଠାଇ,
ଆଶୁ ଚିକିତ୍ସାର ବ୍ୟବସ୍ଥା କରିଲେ
ଯାହା ଲୋଡ଼ା ତାହା ପାଇଁ ।
ଅନ୍ୟ ଶିଷ୍ୟ ମାନେ ହୁଡ଼ା ମରାମତି
ମିଳିମିଶି ଦେଲେ କରି,
ଗୁରୁ ଆନନ୍ଦିତ ଆରୁଣୀର ଚେତା
ଶୀଘ୍ର ଆସିବାରୁ ଫେରି ।
ଆନନ୍ଦରେ ଗୁରୁ ଆରୁଣୀକୁ ସ୍ନେହେ
କଲେ ନେଇ କୋଳାଗ୍ରତ,
ବୋଇଲେ ସଂସାରେ ଯଶ ରଖିଗଲୁ
ଧନ୍ୟ ତୁହି ଗୁରୁ ଭକ୍ତ ।
ଦୁଃଖିତ ମନରେ କହଇ ଆରୁଣୀ
ଆହେ ଗୁରୁବର ମୋର,
ତୃଟି ମୋହଦ୍ୱାରା ହୋଇ ଥିଲେ କିଛି
କ୍ଷମାଗୁଣେ କ୍ଷମା କର ।
ସ୍ନେହେ ଗଦଗଦ ଗୁରୁଦେବ ଧୌମ୍ୟ
ବୋଇଲେ ବତ୍ସ ଆରୁଣୀ,
ଯେ ପରୀକ୍ଷା ଦେଲ ଆଜି ମୋ ଅଗ୍ରତେ
ସଂସାରରୁ ଲିଭିବନି ।

ଯୁଗ ଯୁଗ ପାଇଁ ଶିଷ୍ୟଙ୍କ ନିମନ୍ତେ
ସୃଷ୍ଟି କରିଲ ଆହ୍ୱାନ,
ତୁମ କାର୍ଯ୍ୟ ହୋଇ ରହିଲା ଆଦର୍ଶ
ଗୁରୁଙ୍କୁ କରିଲ ଧନ୍ୟ ।
ଗୁରୁ ପାଇଁ ଶିଷ୍ୟ ହୁଅଇ ବିଖ୍ୟାତ
ଗୁରୁ ହୁଏ ଶିଷ୍ୟ ପାଇଁ,
ଗୁରୁ ଜୀବନ ମୋ ସାର୍ଥକ ହୋଇଲା
ତୁମ ପରି ଶିଷ୍ୟ ପାଇ ।
ଧୌମ୍ୟଙ୍କ ପ୍ରସାଦୁ ସେ ଶିଷ୍ୟ ଆରୁଣୀ
ଉଦ୍ଦାଳକ ନାମ ବହି,
ତେଜସ୍ୱୀ ଯଶସ୍ୱୀ ମୃତ୍ୟୁଞ୍ଜୟୀ ଋଷି
ରୂପେ ଖ୍ୟାତ ହେଲେ ମହି ।





# ଦୟାଳୁ ଗୁରୁ ଓ ଚୋର ଶିଷ୍ୟ

ଥରେ ଶିଷ୍ୟ ଗୁରୁ ଶରଣକୁ ଗଲେ
ଗୁରୁ ତା' ଭାର ବହନ,
ଭଲ ହେଉ ଅବା ମନ୍ଦ ହେଉ ଶିଷ୍ୟ
କରନ୍ତି ସାରା ଜୀବନ ।
ଶିଷ୍ୟର ଉନ୍ନତି ନିମନ୍ତେ ସର୍ବଦା
ରୁହନ୍ତି ଗୁରୁ ଚେଷ୍ଟିତ,
ଶିଷ୍ୟ ଅବନତି କରଇ ବିଷର୍ଣ୍ଣ
ମନକୁ ତାଙ୍କ ବିବ୍ରତ ।
କ୍ଷମାର ସାଗର ଗୁରୁ ସଂସାରରେ
ଧୈର୍ଯ୍ୟ ତାଙ୍କର ଅସୀମ,
ଶିଷ୍ୟ ପାଇଁ ସିଏ ପାଲଟି ଯାଆନ୍ତି
ସ୍ନେହମୟୀ ମାତା ସମ ।
ଅନେକ ବରଷ ପୂର୍ବେ ଥିଲେ ଜଣେ
ଜ୍ଞାନୀ ବଉଦ୍ଧ ସନ୍ୟାସୀ,
କରୁଣାରେ ମନ ଭରା ଥିଲା ତାଙ୍କ
ଥିଲେ ଶିଷ୍ୟ ହୃଦ ଶଶି ।
ଦୂରଦୂରାନ୍ତରୁ ବହୁ ଛାତ୍ର ଆସି
ଶିଷ୍ୟତ୍ୱ ଗ୍ରହଣ କରି,
ଧ୍ୟାନ ଧାରଣାର ଅଭ୍ୟାସ ଶିଖନ୍ତି
ଗୁରୁ ପଦ ଅନୁସରି ।
ଭଲ ଗୁରୁ ରୂପେ ଖ୍ୟାତି ଥିଲା ତାଙ୍କ
ଶିଷ୍ୟେ ଉଚ୍ଚ ସମ୍ମାନରେ,
ସମ୍ମାନିତ ତାଙ୍କୁ କରୁଥିଲେ ସଦା
ମନ କର୍ମ ବଚନରେ ।

ଶିଷ୍ୟ ମଧ୍ୟେ ଥିଲେ      ଯୁବକ ଜଣିଏ
ଥିଲା ତାଙ୍କ ଆଳୁ ଦୋଷ,
ଚୋରି କରୁଥିଲେ      ଶିଷ୍ୟ ଭାଇ ଟଙ୍କା
ସହ ମଠର ଜିନିଷ ।
ଗୁରୁଙ୍କ ନିକଟେ      ଶିଷ୍ୟଗଣ ଯାଇ
ଯେବେ ଅଭିଯୋଗ କଲେ,
ଦିଅ ତାଙ୍କୁ କିଛି      ସମୟ ସେ ଶିଖି
ଯିବ ଗୁରୁଜୀ କହିଲେ ।
ଅଭିଯୋଗକାରୀ      ଶିଷ୍ୟମାନେ ସେଠୁ
ଦୂରେ ଚାଲିଯିବା ପରେ,
ଯୁବକ ଶିଷ୍ୟକୁ      ବୁଝାଇ କହିଲେ
ଡାକି ବସାଇ ପାଶରେ ।
ସାଧନା ପଥରେ      ଚୋରି ଅନ୍ତରାୟ
ଛାଡ଼ିଦିଅ ଏ ଅଭ୍ୟାସ,
ଉତ୍ତମ ଚରିତ୍ର      ଭଲ ଗୁଣ ଶିଖି
ହୁଅ ଉତ୍ତମ ମଣିଷ ।
ଗୁରୁ ବାକ୍ୟ ଶୁଣି      ଲଜ୍ଜା ଅନୁଭବୀ
ନମି ଲମ୍ବଦଣ୍ଡ ହୋଇ,
ଏ କୁଅଭ୍ୟାସରୁ      ମୁକତି ଲଭିବି
କହିଲା ଚରଣ ଛୁଇଁ ।
ପ୍ରତିଜ୍ଞା ସହିତ      ଅଭ୍ୟାସ ବିରୁଦ୍ଧେ
ଲଢ଼ିଲା ସେ କିଛି ଦିନ,
କିନ୍ତୁ ଦୀର୍ଘ ଦିନ      ପ୍ରତିରୋଧ କରି
ପାରିଲାନି ପ୍ରଲୋଭନ ।
ପଡ଼ିଲା ସେ ଧରା      ପୁରୁଣା ଅଭ୍ୟାସ
କବଳରେ ପୁଣି ଆସି,

ଶିଷ୍ୟଗଣେ ଗୁରୁ ପାଶେ ନେଇ ତାକୁ
ସାବ୍ୟସ୍ତ କରିଲେ ଦୋଷୀ ।
ଦାବୀ ଜଣାଇଲେ ଚୋର ଶିଷ୍ୟଟିକୁ
ଆଶ୍ରମରୁ ଦିଅ ତଡ଼ି,
ତାର ଦୌରାତ୍ମ୍ୟରେ ଅନ୍ୟ ଅନ୍ତେବାସୀ
ନପାରନ୍ତି କେହି ପଢ଼ି ।
ଶିଷ୍ୟମାନଙ୍କର ଦାବୀକୁ ଖାରଜ
କରି ଗୁରୁ ଆଜ୍ଞା ଦେଲେ,
ନିଜ ସାଧନାରେ ମନ ଦିଅ ସିଏ
ଶିଖିବ ସମୟ ଦେଲେ ।
ବାରମ୍ବାର ସେହି ଏକା କଥା ଶୁଣି
ଶିଷ୍ୟେ ହେଲେ କୁହାକୁହି,
ଏତେ ପରେ ଗୁରୁ ତା' ପ୍ରତି ଦରଦୀ
କିମ୍ପାଇଁ ହେଉନି ସହି ।
ଗୁରୁଙ୍କ ଉପରେ ଅନ୍ୟଶିଷ୍ୟଙ୍କର
କମି ବିଶ୍ୱସନିୟତା,
ମନେ ସୃଷ୍ଟିକଲା ତିକ୍ତତା ସହିତ
ପ୍ରବଳ ଅସହିଷ୍ଣୁତା ।
ସେହି ଘଟଣାର ପୁନର୍ବାର ଯେବେ
ହୋଇଲା ପୁନରାବୃତ୍ତି,
ଗୁରୁଙ୍କ ସାମ୍ନାରେ ସେହି ଯୁବକକୁ
ନେଇ କରିଲେ ଆପତ୍ତି ।
ଏକ ସ୍ୱରେ ସର୍ବେ ମାଗିଲେ ଗୁରୁଙ୍କୁ
ସ୍ଥାୟୀ ନିଷ୍ପତ୍ତି ଶୁଣାଅ,
ଯଦି ଆଶ୍ରମରେ ରହିବ ଏ ଚୋର
ଆମକୁ ଯିବାକୁ ଦିଅ ।

ଏହିପରି ଦାବୀ ଶୁଣି ଶିଷ୍ୟଙ୍କର
ଗୁରୁଜୀ ହେଲେ ଦୁଃଖିତ,
ଚୋର ହେଉ ଖଣ୍ଟ ନିଜର ପୁତ୍ରକୁ
ତ୍ୟାଗକରେ କି ପିତୃତ୍ୱ ।
ମନକୁ ସୁଦୃଢ଼ କରି ଗୁରୁ ଦୁଃଖେ
ବୋଇଲେ ଯିବ ତ ଯାଅ,
ସେହି ଶିଷ୍ୟଟିକୁ ତେଜିବାର କଥା
ମୋ ସମ୍ମୁଖେ ନ ଉଠାଅ ।
ଗୁରୁଙ୍କ କଠୋର ବାଣୀ ଶୁଣି ସର୍ବେ
ହେଲେ ଆଶ୍ଚର୍ଯ୍ୟ ଚକିତ,
ବୋଇଲେ ଗୁରୁ ହେ କୁହ ନାହିଁ ଏହି
ପରି କଥା ବିପରୀତ ।
ବିରକ୍ତିରେ ଗୁରୁ ବଚନ ଅମାନ୍ୟ
କରି ପାପ ଅରଜିଲୁ,
କ୍ଷମା କର ଲବେ କଠୋର ନ ହୁଅ
ତେଜିଲେ ନିଶ୍ଚେ ଭାସିଲୁ ।
ଦୟା ବିଗଳିତ ଗୁରୁ ଶିଷ୍ୟଗଣେ
ବୋଇଲେ ତୁମେ ସମସ୍ତେ,
ଜ୍ଞାନ ବୁଦ୍ଧି ବୃତ୍ତି ସାଧନେ ପ୍ରବୀଣ
ଅନ୍ୟମଠରେ ନିଶ୍ଚିନ୍ତେ ।
ରହିବା ନିମନ୍ତେ ଅନୁମତି ପାଇ
ଜୀବନ ଗଢ଼ି ପାରିବ,
ଅଭିଯୁକ୍ତ ସେହି ଶିଷ୍ୟଟି କେଉଁଠି
ଗ୍ରହଣୀୟ ନ ହୋଇବ ।
ମୁହିଁ ଛାଡ଼ି ଦେଲେ ଜୀବନ ତାହାର
ହୋଇବ ନିଶ୍ଚେ ବେକାର,

ତାକୁ ପରିତ୍ୟାଗୀ ତା' ପତନ ପାଇଁ
ନିନ୍ଦିବି ଜୀବନ ମୋର ।
ଗୁରୁ ଶିଷ୍ୟଙ୍କର ଯୁକ୍ତି ତର୍କ ଶୁଣି
ଅଭିଯୁକ୍ତ ସେହି ଶିଷ୍ୟ,
ଗୁରୁ କରୁଣାରେ ହୋଇଣ ଦ୍ରବିତ
ମାଗିଲା ଗୁରୁ ଆଶିଷ ।
ଗୁରୁ ପାଦ ଛୁଇଁ କରିଲା ସଂକଳ୍ପ
ଦୃଢ଼େ ଜୀବନରେ ଆଉ,
କରିବ ନାହିଁ ସେ ଚୋରି କଦାକାଳେ
କୃପା ତୁମ୍ଭ ରହିଥାଉ ।
ସଂକଳ୍ପ ତାହାର ଏତେ ଶକ୍ତିଶାଳୀ
ଥିଲା ସବୁଦିନ ପାଇଁ,
ଗୁରୁ କରୁଣାରୁ ଉତ୍ତମ ମଣିଷ
ହେଲା ଚୋରି ଛାଡ଼ି ଦେଇ ।
ଗୁରୁଙ୍କର କୃପା ଯାହା ପରେ ବର୍ଷେ
ଧନ୍ୟ ତାହାର ଜୀବନ,
ଗୁରୁ ତା'ର ସବୁ ଦାୟିତ୍ୱ ନିଅନ୍ତି
ବିଡ଼ାଳ ଛୁଆ ଯେସନ ।
ଶିଷ୍ୟ ନିଜ କଥା ଭାବୁ ବା ନ ଭାବୁ
ଗୁରୁଙ୍କ ମନ ଏପରି,
ସର୍ବଦା ଚିତ୍ତରେ ଚିନ୍ତନ୍ତି ଶିଷ୍ୟର
ଉନ୍ନତି ହେବ କିପରି ।



# ମହର୍ଷି ଋଭୁ ଓ ନିଦାଘ

ଶିଷ୍ୟଟିଏ ଜଣେ ଉତ୍ତମ ଗୁରୁଙ୍କ
ସାନିଧ୍ୟ କରିଲେ ଲାଭ,
ତାକୁ ଆଉ କିଛି ଅଧିକ କରିବା
ପଡ଼େନା ମିଳଇ ଶୁଭ ।
ସଦ୍‌ଗୁରୁ ବିଡ଼ାଳ ନ୍ୟାୟରେ ଶିଷ୍ୟର
ଯୋଗକ୍ଷେମ ବହି ଥାନ୍ତି,
ଶିଷ୍ୟ ଅପାରଗ ହେଉବା ସମର୍ଥ
ସେଥେ ଦୃଷ୍ଟି ନ ଦିଅନ୍ତି ।
ଶିଷ୍ୟ ଅନ୍ୱେଷଣ ଗୁରୁ ପାଶେ ଶେଷ
ଭାଗ୍ୟଥିଲେ ସଦ୍ ଗୁରୁ,
ପ୍ରାପ୍ତ ହୋଇଥାନ୍ତି ଶିଷ୍ୟ ଯଦି ଯୋଗ୍ୟ
ହୋଇଥାଏ ପ୍ରଥମରୁ ।
ଶିଷ୍ୟ ଯୋଗ୍ୟ ଥିଲେ ସଦ୍ ଗୁରୁ ଆପେ
ପହଞ୍ଚନ୍ତି ଶିଷ୍ୟ ପାଶେ,
ହାତ ଧରି ତା'ରେ ଉଦ୍ଧାର କରନ୍ତି
ନ ପଡ଼େ ସଂସାର ଫାଶେ ।
ଋଭୁ ନାମେ ଜଣେ ପ୍ରଖ୍ୟାତ ମହର୍ଷି
ଗୁରୁକୁଳାଶ୍ରମ ଗଢ଼ି,
ରହୁଥିଲେ ବନେ ଶିଷ୍ୟ ଗହଣରେ
ଆସୁଥିଲେ ଯେତେ ପଢ଼ି ।
ଶିଷ୍ୟ ମଧ୍ୟେ ଥିଲା ନିଦାଘ ନାମରେ
ଅସ୍ଥିର ଚପଳମତି,
ବଡ଼ ଯିଦ୍ଦି ସହ ବିପଥରେ ସିଏ
କରୁଥିଲା ନିତି ଗତି ।
ଅନ୍ୟ ଶିଷ୍ୟ ପରି ନ ଥିଲା ତାହାରି
ପାଠେ ନିଷ୍ଠା ଏକାଗ୍ରତା,
ତଥାପି ଗୁରୁଙ୍କ ପ୍ରିୟ ଶିଷ୍ୟ ଥିଲା
ଏହି ଥିଲା ବିଚିତ୍ରତା ।

ଅନ୍ୟ ଶିଷ୍ୟ ତାଙ୍କୁ କରୁଥିଲେ ଈର୍ଷା
କିଛି ନ ଥାଇ ବି ଗୁଣ,
ଗୁରୁଙ୍କର ଏତେ ପ୍ରିୟ ସେ କାହିଁକି
ଏହାର କିବା କାରଣ ।
ଗୁରୁ ଶିଷ୍ୟଟିର ଅତୀତ ଅଥବା
ବର୍ତ୍ତମାନ ନ ଦେଖନ୍ତି,
ଶିଷ୍ୟ ଭବିଷ୍ୟତ ପରିମାଣି ତାହା
ପାଇଁ ଉତ୍ସାହୀ ହୁଅନ୍ତି ।
ନିଦାଘ ପ୍ରାୟତଃ ଆଶ୍ରମରୁ କେଣେ
ଲୁଚି ଲୁଚି ଯାଏ ଚାଲି,
ଗୁରୁ ଋଭୁ ନିଜେ ଖୋଜି ଖୋଜି ତାଙ୍କୁ
ଆଣନ୍ତି ଭୁଲ ତା' ଭୁଲି ।
ଅନ୍ୟମନସ୍କ ସେ ସହଜରେ ବିଦ୍ୟା
କରଇ ନାହିଁ ଗ୍ରହଣ,
ବେଶ ବଦଳାଇ ଗୁରୁ ସ୍ୱୟଂ ଯାଇ
ଦେଉଥିଲେ ତାଙ୍କୁ ଜ୍ଞାନ ।
ଦିନେ ଗୁରୁ ଋଭୁ ନିପଟ ଗାଉଁଲି
ବେଶେ ନିଜକୁ ସଜାଇ,
ନିଦାଘକୁ ଖୋଜି ସେ ଥିବା ସ୍ଥାନରେ
ଗୁପ୍ତେ ପହଞ୍ଚିଲେ ଯାଇ ।
ସେକାଳେ ରାସ୍ତାରେ ରାଜାଙ୍କ ରୋଷଣୀ
ପଟୁଆର ଯାଉଥାଏ,
ନିଦାଘ ତାହାର ଦର୍ଶନରେ ଅତି
ଆନନ୍ଦିତ ହେଉଥାଏ ।
ଗାଉଁଲୀ ବେଶରେ ଥିବା ଗୁରୁ ଋଭୁ
ତାହା ପାଶେ ଠିଆ ହୋଇ,
ପଚାରିଲେ ବାବା ଦେଖୁଛ କଅଣ
ଦେବ କି ମୋତେ ବୁଝାଇ ।

ଶିଷ୍ୟ ବୋଲେ ଆମେ ଦେଖୁଛୁ ରାଜାଙ୍କ
ଶୋଭାଯାତ୍ରା ଆନନ୍ଦରେ,
ତୁମେ ଯଦି ପାର ସୁଖାନନ୍ଦ ନିଅ
ଠିଆ ହୋଇ ଏହିଠାରେ ।
ଗୁରୁ ପଚାରିଲେ କାହିଁ ରାଜା କାହିଁ
ଶୋଭାଯାତ୍ରା କାହା ପାଇଁ,
ନିଦାଘ ବୋଇଲା ହାତୀ ପରେ ରାଜା
ତୁମକୁ କି ଦିଶୁ ନାହିଁ ।
ମହର୍ଷି ପୁଚ୍ଛିଲେ ଏମାନଙ୍କ ମଧ୍ଯୁ
ରାଜନ କେଉଁ ଜଣକ,
ନିଦାଘ କ୍ରୋଧରେ କହିଲା ରେ ମୂର୍ଖ
କଣା ତୋ ଆଖି ଯୋଡ଼ାକ ।
ଯେଉଁ ମଣିଷଟି ବସିଛି ଉପରେ
ସେହି ଗୋଟିକ ରାଜନ,
ତାଙ୍କ ତଳେ ଥିବା ପଶୁ ଗୋଟି ହାତୀ
ଦେଖ ଫେଡ଼ି ତୋ ନୟନ ।
ଋଷି ରଭୁ ଶୁଣି ଶାନ୍ତ ଭାବେ ଉକ୍ତ
କଲେ ଆଚ୍ଛା ଏ ଏମନ୍ତ,
ବୁଝି ପାରୁନି ମୁଁ ଏ ଉପର ତଳ
କଥାର କିଛି ବୃତାନ୍ତ ।
ରଭୁଙ୍କର ଏହି କଥା ଦୁଇପଦ
ନିଦାଘ ମନରେ ନିଆଁ,
ଜାଳି ଦେଇ ତାକୁ କରିଲା କ୍ରୋଧିତ
କ୍ରୋଧେ ଭୁଲିଲା ଦୁନିଆଁ ।
ବୋଇଲା ରେ ମୂର୍ଖ ନାହିଁ ତୋର ସତେ
ଉପର ତଳ ଧାରଣା,
ଲାଗୁଛି ଦେଖୁଛୁ ଶୁଣୁଛୁ ଯାହା ତା
ପଡୁନି ବୁଦ୍ଧିକୁ ଜଣା ।

କରି ଦେଖାଇଲେ ଦେଖି କରି ତୁମେ
ବୁଝିବ କରି କାର୍ଯ୍ୟରେ,
ଏହା କହି ରଭୁ ଋଷିଙ୍କୁ ନୁଆଇଁ
ଚଢ଼ି ବସିଲା କାନ୍ଧରେ ।
ବୋଲେ ଏବେ ଦେଖ ତୁମ୍ଭ ଉପରେ ମୁଁ
ତୁମେ ଅଛ ତଳେ ମୋର,
ମୁଁ ହେଉଛି ରାଜା ତୁମେ ମୋ ବାହନ
ପଶୁ ବୁଝିଲ ଏଥର ।
ଶାନ୍ତ ଭାବେ ରଭୁ ବୋଇଲେ ବୁଝିଲି
ମଣିଷ ପଶୁ ପ୍ରଭେଦ,
ଉପର ତଳର ପାର୍ଥକ୍ୟ କଅଣ
ଜାଣିଲି ତାହାର ଭେଦ ।
ତଥାପି ତୁମ୍ଭର ମୁଖରୁ ନିଶୃତ
ମୁଁ, ତୁମେ ଶବଦ ଦୁଇ,
କେଉଁ ଅର୍ଥେ ଏଠି ହେଲା ବ୍ୟବହୃତ
ହୃଦବୋଧ ହେଲା ନାହିଁ ।
ହଠାତ୍ ନିଦାଘ ସେହି ମୂଳପ୍ରଶ୍ନ
ମୁଁ କିଏ ତୁମେ କିଏ,
ଶୁଣି ଅଟକିଲା ତଳେ ଲୋଟିଗଲା
ଜାଣି ନିଶ୍ଚେ ଗୁରୁ ଇଏ ।
ଗୁରୁ ପ୍ରସାଦରୁ ହେଲା ପ୍ରାପ୍ତ ତାକୁ
ସେ ସମୟେ ଆତ୍ମଜ୍ଞାନ,
ସଂସାରରୁ ହଟି ସେ ମୂଳ ପ୍ରଶ୍ନରେ
ନିବଦ୍ଧ ହେଲା ତା' ମନ ।
ଛିଡ଼ିଗଲା ଭ୍ରମ ଗ୍ରନ୍ଥି କ୍ଷଣକରେ
ହେଲା ଆତ୍ମ ସାକ୍ଷାତ୍କାର,
ଗୁରୁ କରୁଣାରୁ ଅଜ୍ଞାନ ଶିଷ୍ୟର
ଏପରି ହେଲା ଉଦ୍ଧାର ।



# ଆଦର୍ଶ ଗୁରୁଭକ୍ତ କଠ

ପ୍ରାଚୀନ କାଳରେ ଶିଷ୍ୟମାନେ ରହି
ଗୁରୁଙ୍କର ଆଶ୍ରମରେ,
ଶିକ୍ଷା ଆରମ୍ଭରୁ ଶେଷ ଯାଏ ଶିକ୍ଷା
ପାଉଥିଲେ ସେହିଠାରେ ।
ଶିକ୍ଷା ଶେଷ ହେଲେ ଫେରୁଥିଲେ ଗୃହେ
ଦକ୍ଷିଣା ଗୁରୁଙ୍କୁ ଦେଇ,
ତ୍ୟାଗ ଅତ୍ମୋତ୍ସର୍ଗ ଐକାନ୍ତିକ ନିଷ୍ଠା
ଫଳଶ୍ରୁତି ଥିଲା ସେଇ ।
ଏ ତ୍ୟାଗ ଭିତରେ ରହିଥିଲା ଭରି
ଗୁରୁଭକ୍ତି କୃତଜ୍ଞତା,
ଗୁରୁପ୍ରତି ଶିଷ୍ୟ ସମର୍ପଣ ଭାବ
ପୁତ୍ରବତ୍ ଆତ୍ମୀୟତା ।
ଏକଦା ଗୋଟିଏ ଆଶ୍ରମରେ ପତ୍ନୀ
ପ୍ରଜାପତିଙ୍କ ସହିତ,
କରି ଆସୁଥିଲେ ବସବାସ ଋଷି
ମହାତପା ଖୁସି ଚିତ୍ତ ।
ଶାନ୍ତ ମୃଦୁଭାଷୀ ରୂପବାନ ପୁତ୍ର
କୁଶର ଉଚ୍ଚ ଭାବନା,
କୁମାରୀ ରେବତୀ କର୍କଶ ଭାଷିଣୀ
ଥିଲା ଉଗ୍ର ରୂପହୀନା ।
ଋଷିପତ୍ନୀ ନିଜ କନ୍ୟା ଗୁଣ ପାଇଁ
ଥିଲେ ଅତ୍ୟନ୍ତ ଚିନ୍ତିତା,
କୌଣସି କାର୍ଯ୍ୟେ ସେ ନ ଥିଲେ ନିପୁଣା
ନ ଥିଲା ଉତ୍ତମ ଚିନ୍ତା ।
ବିବାହ ବୟସ ହେବାରୁ ଜନନୀ
ଋଷିଙ୍କୁ ଦେଲେ ସୂଚନା,
ଭଲ ବରଟିଏ ଖୋଜି ଆଣ ଶୀଘ୍ର
ବିଭା ଦେବା ଆମ କନ୍ୟା ।

ଶୁଣି ମହାତପା ବୋଇଲେ ବୁଝୁଛି
ସବୁ ଚିନ୍ତିତ ମୁଦ୍ରାରେ,
ରେବତୀ ଯେ ଗୁଣ ସହିତ ଜନ୍ମିଛି
ନେବ କେ ପତ୍ନୀ ରୂପରେ ।
ଦିନେ ଦୁହେଁ ବହୁ ଚିନ୍ତା କରି ମନେ
ଗଲେ ଭରଦ୍ୱାଜାଶ୍ରମେ,
କନ୍ୟା କଥା କହି ବୋଇଲେ ମହର୍ଷି
ବୁଝ ତା ସମସ୍ୟା ତୁମେ ।
ପତିପତ୍ନୀଙ୍କର ନିବେଦନ ଶୁଣି
ଭରଦ୍ୱାଜ ଦୁଃଖ ମନେ,
ବୋଇଲେ ମୋ ପାଶେ ଅଧ୍ୟୟନ ଆଶେ
ଛନ୍ତି ଯେଉଁ ଶିଷ୍ୟମାନେ ।
ରେବତୀର ପାଣି ଗ୍ରହଣ ପ୍ରସଙ୍ଗ
କହି ମୁଁ ପାରିବି ନାହିଁ,
ସେପରି କରିଲେ ସ୍ୱାର୍ଥବାଦୀ ରୂପେ
ନିନ୍ଦିତ ହୋଇବି ମୁହିଁ ।
ତଥାପି ଚିନ୍ତିତ ହୁଅ ନାହିଁ ତୁମେ
ତା' ବିବାହ କାଳ ହେଲେ,
ହଟିଯିବ ସବୁ ବାଧା ଓ ବନ୍ଧନ
ପ୍ରଭୁ କରୁଣା ଝରିଲେ ।
ସମୟ ନଈରେ ବହିଗଲା ପାଣି
କଳ କଳ ହୋଇ କାଳ,
ସେଦିନଟି ଥିଲା ଶିଶିରରେ ଭିଜା
ପୌଷର ଏକ ସକାଳ ।
ପୂର୍ବ ଆକାଶରେ ଉଦିତ ସୂର୍ଯ୍ୟଙ୍କ
କିରଣେ ନ ଥିଲା ବଳ,
ଶୀତ ସକାଳରେ କଅଁଳ କୁହୁଡ଼ି
ଦେଖାଉ ଥିଲା ତା' ଖେଳ ।

ମଗ୍ନ ପ୍ରକୃତିର ଥାଇ ଅପରୂପ
ସୌନ୍ଦର୍ଯ୍ୟରେ ଭରଦ୍ୱାଜ,
ମଧୁମୟ ସେହି ମୂହୂର୍ତ୍ତେ ଦେଖିଲେ
ଯୁବକଟେ ହୋଇ ସଜ ।
ବିନମ୍ରେ ମୁନିଙ୍କୁ କରିଲା ପ୍ରଣାମ
ଆଶ୍ରମ ଆଡ଼କୁ ଆସି,
ଯୁବକର ଚାଲି ଚଳନରେ ମୁନି
ମନ ହେଲା ଅତି ଖୁସି ।
ପୁଛିଲେ ମହର୍ଷି ପ୍ରକାଶ ତୁମର
ଏଥେ ଆସିବା କାରଣ,
ଅତି ନମ୍ରଭାବେ ଯୁବକ ବୋଇଲେ
ଜନ୍ମକୁ କରିବି ଧନ୍ୟ ।
ନାମ ମୋର କଠ ଆପଣଙ୍କ ପାଶୁ
ବିଦ୍ୟା ଗ୍ରହଣ ନିମନ୍ତେ,
ଆସିଛି ଶରଣେ କରୁଣା କରନ୍ତୁ
ସଫଳ ହେବି ଯେମନ୍ତେ ।
ବ୍ରାହ୍ମଣ ଯୁବକେ ଚାହିଁ ଟିକେ ହସି
ମହର୍ଷି କଲେ ପ୍ରକାଶ,
ଚାରିବେଦ ସ୍ମୃତି ପୁରାଣାଦି ଶାସ୍ତ୍ରେ
ରହିଛି ମୋର ପ୍ରବେଶ ।
ଏ ଶାସ୍ତ୍ର ପଠନେ ଚିନ୍ତି କରି ମନେ
ଯଦି ଆସିଛ ଏ ଠାବେ,
ନିଶ୍ଚିନ୍ତ ମନରେ ଅଧ୍ୟାପନା କାର୍ଯ୍ୟ
ଗ୍ରହଣ କରିବି ତେବେ ।
ପାଦେ ପଡ଼ି କଠ ବୋଲେ ପ୍ରଭୁ ଉକ୍ତ
ବିଦ୍ୟା ଶିକ୍ଷା ଆଶା ନେଇ,
ଆସିଛି କୃତାର୍ଥେ କରନ୍ତୁ କରୁଣା
କଣା ବରଷା କରାଇ ।

ଭଦ୍ର ସୁଦର୍ଶନ ସୁଗୁଣ ସମ୍ପନ୍ନ
କଠ ଗୁରୁଭକ୍ତି ଦେଖି,
ବୁଦ୍ଧି ଜ୍ଞାନ ସହ ଗ୍ରହଣଶୀଳତା
ଗୁରୁଙ୍କୁ କରିଲା ସୁଖି ।
ସମୟାନୁସାରେ ସମସ୍ତ ବିଦ୍ୟାରେ
କଠ ହୋଇଲା ନିପୁଣ,
ଦିନେ ଗୁରୁଦେବ ବୋଇଲେ ତୁମ୍ଭର
ସରିଲା ଶିକ୍ଷା ଗ୍ରହଣ ।
ଇଚ୍ଛା କଲେ ତୁମ୍ଭେ ସ୍ୱଗୃହକୁ ଫେରି
ଯାଇ ପାରିବ ଏଥର,
କଠ ଆନନ୍ଦରେ ଗୁରୁଙ୍କ ପୟରେ
କଲା ପ୍ରେମେ ନମସ୍କାର ।
ଦୁଇ ହାତ ଯୋଡ଼ି ଗୁରୁ ସମ୍ମୁଖରେ
କଲା ବିନମ୍ରେ ବିନତି,
ଗୁରୁ ଦକ୍ଷିଣା ମୁଁ ଚାହୁଁଛି ଦେବାକୁ
କର କରୁଣା ମୋ ପ୍ରତି ।
କେଉଁଥିରେ ଶ୍ରଦ୍ଧା କି ଦରବେ ଇଚ୍ଛା
କହିଲେ ଆଣି ଚରଣେ,
ଅବିଳମ୍ବେ ସମ- ର୍ପଣ କରିଦେବି
ନ ଭାବନ୍ତୁ କିଛି ମନେ ।
ଗୁରୁ ଭରଦ୍ୱାଜ ବୋଇଲେ ଆନନ୍ଦ
ତୁମ ସଫଳତା ଦେଖି,
ଅନ୍ୟ କିଛି ମୋର ଦରକାର ନାହିଁ
ସେତିକିରେ ମୁଁ ହିଁ ସୁଖି ।
ପ୍ରାର୍ଥନା କରୁଛି ଈଶ୍ୱର କରନ୍ତୁ
ତୁମ ଉପରେ କରୁଣା,
ଶିଷ୍ୟ ସଫଳତା ଗୁରୁଙ୍କ ପାଇଁକି
ସବୁଠୁ ବଡ଼ ଦକ୍ଷିଣା ।

କର୍ତ୍ତବ୍ୟ ମୋହର        କରିବା ନିମନ୍ତେ
ଆଶୀର୍ବାଦ ମୋତେ କର,
ଗୁରୁଙ୍କୁ ଦକ୍ଷିଣା        ପ୍ରଦାନ ନ କରି
ଯାଇ ପାରିବିନି ଘର ।
ମୋର ଅଧିକାର        ମୋ ଠାରୁ ଛଡ଼େଇ
ନିଅ ନାହିଁ କର କୃପା,
ଶିଷ୍ୟର ଆଗ୍ରହ        ଦେଖି ଭରଦ୍ଵାଜ
ବୋଇଲେ ଶୁଣରେ ବାପା ।
ଅଳ୍ପ ଦୂରେ ଋଷି        ମହାତପା ନାମେ
ରହିଛନ୍ତି ଜଣେ ଋଷି,
କନ୍ୟା ନାମ ତାଙ୍କ        ରେବତୀ ମୋର ସେ
ଅଟନ୍ତି ଅତି ବିଶ୍ଵାସି ।
କନ୍ୟାଟି ତାଙ୍କର        ମୋ ଆଦରଣୀୟା
କନ୍ୟା ରୂପେ ମନେ କରେ,
ବିବାହ ତାହାକୁ        କରିବ ଯଦି ମୁଁ
ଖୁସି ହୋଇବି ତହିଁରେ ।
କଠ ବୋଇଲେ ହେ        ଗୁରୁଜୀ ଆପଣ
ସନ୍ତୁଷ୍ଟ ଯେଉଁ କାର୍ଯ୍ୟରେ,
ଗ୍ରହଣ କରିବି        ତୁମର ଆଦେଶ
ତାହାକୁ ବିନା ଦ୍ଵିଧାରେ ।
ଗୁରୁଙ୍କର ଆଜ୍ଞା        ନ ମାନି ଜୀବନେ
ନାହିଁ ମୋହର ଉନ୍ନତି,
ଗୁରୁ ଗୁରୁଜନ        ବାକ୍ୟକୁ ମାନିବା
ମୋ ଜୀବନ ପଥ ନୀତି ।
ଯେଉଁ ଶିଷ୍ୟ ତାଙ୍କ        ଆଦର୍ଶ ନିର୍ଦ୍ଦେଶ
ଉପଦେଶ ନ ସ୍ଵୀକାରେ,
କଦାପି ପହଁଚି        ପାରିବ ନାହିଁ ସେ
ଜୀବନେ ଲକ୍ଷ୍ୟ ସ୍ଥଳରେ ।

ଏଣୁ ଆପଣଙ୍କ ନିର୍ଦ୍ଦେଶାନୁସାରେ
କାର୍ଯ୍ୟ ନିଶ୍ଚେ ଆଚରିବି,
ଗୁରୁ ମନେ ଖୁସି ଭରି ମୋ ଜୀବନ
ପଥ ସୁଗମ କରିବି ।
କଠର ଏପରି ବାକ୍ୟ ଶୁଣି ଗୁରୁ
ଅତି ଆନନ୍ଦିତ ହୋଇ,
ଆଶୀର୍ବାଦ ବହୁ କରିଲେ ବର୍ଷଣ
ଶିଷ୍ୟ ଶିରେ ହସ୍ତ ଥୋଇ ।
ଗୁରୁଙ୍କ ପ୍ରଦତ୍ତ ବଚନାନୁସାରେ
ରେବତୀ ପାଣି ଗ୍ରହଣ,
କରି କଠ ଶେଷେ ଗୁରୁଙ୍କ ନିକଟେ
କଲେ ଆତ୍ମ ନିବେଦନ ।
ଗୁରୁ ଆଜ୍ଞା ମୁହିଁ କରିଛି ପାଳନ
ଏବେ ଛାଡ଼ି ଆଶ୍ରମକୁ,
ବିଦାୟ ବେଳାରେ ଦିଅ ଉପଦେଶ
ଯାଉଛି ଫେରି ଗୃହକୁ ।
ଗୁରୁଦେବ ସ୍ନେହେ କୋଳାଗ୍ରତ କରି
ବୋଇଲେ ହେ ବସ୍ତ କଠ,
ତୁମ ଗୁରୁ ଭକ୍ତି ଦେଖି ମନ ପ୍ରିତ
ହେବ ଜଗତରେ ଶ୍ରେଷ୍ଠ ।
ଗାର୍ହ୍ୟସ୍ଥ ଜୀବନେ ଶିବ ଭଗବାନେ
କରିବ ନିଶ୍ଚେ ସନ୍ତୁଷ୍ଟ,
ତାଙ୍କର କରୁଣା ବଳେ ଜଗତରେ
ବଡ଼ ହେବ କଟି ରିଷ୍ଟ ।
ତପସ୍ୟା ବଳରେ ଶିବ ଶଙ୍କରଙ୍କୁ
କଠ କରିଲେ ପ୍ରସନ୍ନ,
ପ୍ରଭୁ ପ୍ରିତ ହୋଇ କଠେ ଦେଲେ ବର
ଜୀବନ ହେବ ତୋ ଧନ୍ୟ ।

ଗୁରୁ ପାଦେ ତୋର ଭକ୍ତି ମୋ ମନରେ
ଭରିଛି ଅଶେଷ ଖୁସି,
ଦେଉଛି ଆଶିଷ କଠୋପନିଷଦ
ତୋ ଶୋଭିବ ଯେହ୍ନେ ଶଶି ।
ସ୍ୱଆଶ୍ରମ ଗଢ଼ି ଗୁରୁ ଲବ୍ଧ ଜ୍ଞାନ
ଶିଷ୍ୟଙ୍କୁ କଲେ ପ୍ରଦାନ,
ରଚନା କରିଣ କଠୋପନିଷଦ
ଧନ୍ୟ କରିଲେ ଜୀବନ ।





# ଶୁକ୍ରାଚାର୍ଯ୍ୟ ଓ ଗୁରୁ ଅଙ୍ଗିରସ

ଶୁକ୍ରାଚାର୍ଯ୍ୟ ଥିଲେ ରଷି ଭୃଗୁ ପୁତ୍ର
ସୃଷ୍ଟିକର୍ତ୍ତା ବ୍ରହ୍ମା ନାତି,
ତିକ୍ଷ୍ଣ ବୁଦ୍ଧିମାନ ଜନନୀର ନାମ
ଥିଲା ତାହାଙ୍କର କ୍ଷାତି ।
ସେକାଳେ ପ୍ରଖ୍ୟାତ ଗୁରୁ ଥିଲେ ରଷି
ଅଙ୍ଗିରସ ଜ୍ଞାନବାନ,
ବେଦାଦି ଉପରେ ଥିଲା ତାହାଙ୍କର
ସମ୍ପୂର୍ଣ୍ଣ ଅଖଣ୍ଡ ଜ୍ଞାନ ।
ମହାରଷି ଭୃଗୁ ତାଙ୍କ ପାଶେ ବେଦ
ଶିକ୍ଷା ପ୍ରାପ୍ତି କରିବାକୁ,
ପ୍ରେରଣ କରିଲେ ଛୋଟ ଥିବାବେଳେ
ଉଚ୍ଚାଭିଳାଷି ଶୁକ୍ରଙ୍କୁ ।
ଗୁରୁ ଗୃହେ ରହି ନିଶ୍ଚିନ୍ତ ମନରେ
କରିଲେ ବିଦ୍ୟାଗ୍ରହଣ,
ଗୁରୁ ସେବା କରି ହେଲେ ଦିନୁଦିନ
ଗୁରୁଙ୍କ ପ୍ରିୟଭାଜନ ।
ଅଙ୍ଗିରସଙ୍କର ପୁଅଟିଏ ଥିଲା
ନାମ ତା'ର ବୃହସ୍ପତି,
ସମ ବୟସର ହୋଇଥିବା ହେତୁ
ଏକାସାଥିରେ ପଢ଼ନ୍ତି ।
ଦୁହିଁଙ୍କର ମଧ୍ୟେ ଅଧିକ ମେଧାବୀ
ଥିଲେ ଭୃଗୁଙ୍କ ଆତ୍ମଜ,
ସାମାନ୍ୟ ପଛୁଆ ତାଙ୍କ ଠାରୁ ଥିଲା
ଅଙ୍ଗିରସଙ୍କ ଅଙ୍ଗଜ ।

ପାଠରେ ପଛୁଆ ଥିବା ଦେଖି ପୁତ୍ର
ରାତ୍ରୀରେ ଅଲଗା ଭାବେ,
ବିଦ୍ୟାଦାନ କାର୍ଯ୍ୟ କରୁଥିଲେ ପିତା
ଦେଖି ତାହା ଶୁକ୍ର ଭାବେ ।
ଗୁରୁ ତାହା ପ୍ରତି ପକ୍ଷପାତ କରୁ
ଅଛନ୍ତି ପୁତ୍ର ସ୍ନେହରେ,
ପୁତ୍ରକୁ ଅଧିକ ପଢ଼ାନ୍ତି ଯେଉଁଠି
ମୁଁ ରହି ଅଛି ଅନ୍ଧାରେ ।
ସଂନ୍ଦେହର ବୀଜ ଏପରି ଜିନିଷ
ମନରେ କଲେ ପ୍ରବେଶ,
ମନକୁ ବିକ୍ଷେଇ ଅଶାନ୍ତି ବଢ଼େଇ
ହଟେଇ ଦିଏ ସନ୍ତୋଷ ।
ସନ୍ଦେହର ଫଳ ମନ ବୃକ୍ଷେ ଫଳେ
ନେଇ ଈର୍ଷା ରୁପ ଡାଳେ,
ଈର୍ଷା ଫଳ ପକ୍ୱ ହୋଇ ପ୍ରତିସ୍ପର୍ଦ୍ଧା
ସ୍ୱରୂପେ ହୃଦୟେ ଖେଳେ ।
ପ୍ରତିସ୍ପର୍ଦ୍ଧା ଚିନ୍ତା ଏତେ ଭୟଙ୍କର
କରି ଦିଏ ଦୁଃସାହସୀ,
ସଫଳତା ଦ୍ୱାର ରୁଦ୍ଧ କରିଦିଏ
ବିବେକପଣ ନିଶେଷୀ ।
ମନ ଅସନ୍ତୋଷ ଏପରି ଅଶାନ୍ତ
କରି ଦେଲା ଯେ ତାହାଙ୍କୁ,
ଗୁରୁଙ୍କ ବିରୁଦ୍ଧେ ଅଭିଯୋଗ ଫର୍ଦ୍ଦ
ପ୍ରଦାନ କଲେ ଗୁରୁଙ୍କୁ ।

ଗୁରୁ ବୁଝେଇଲେ          ପକ୍ଷପାତ ନୁହେଁ
ଯେଣୁ ସେ ରୁହେ ପଛୁଆ,
ଅଧିକ ସମୟ               ଚାହେଁ ବିଦ୍ୟାଦାନ
ଯୋଗ୍ୟ ହୋଇବାକୁ ଠିଆ ।
ଯେତେ ବୁଝାଇଲେ          ଶୁକ୍ର ବଦ୍ଧମୂଳ
ଧାରଣା ନ ବଦଳିଲା,
ଗୁରୁଙ୍କ ମନରେ              ଏହି ଅସଂତୁଷ୍ଟି
ଅଭିମାନ ବଢ଼ାଇଲା ।
ଗୁରୁ ପ୍ରତି ଥିବା              ତାଙ୍କ ମନେ ଶ୍ରଦ୍ଧା
କମିବାରୁ ଧିରେ ଧିରେ,
ଗୁରୁ ଦତ୍ତ ଶିକ୍ଷା              ପ୍ରତି ତାଙ୍କ ରୂଚି
କମି ଗଲା ଚେତନାରେ ।
ରୂଚିହୀନ ବ୍ୟକ୍ତି              ଶାସ୍ତ୍ର ଜ୍ଞାନ ପ୍ରାପ୍ତି
କରିବାରେ ଅସମର୍ଥ,
ଏଣୁ ସେ ଭାବିଲେ           ଏ ଗୁରୁଙ୍କ ପାଶେ
ରହିବା ମୋ ପାଇଁ ବ୍ୟର୍ଥ ।
ଅଙ୍ଗିରସ ପରି               ଗୁରୁ ତ୍ୟାଗ କରି
ଶୁକ୍ର ଗୌତମଙ୍କ ପାଶେ
ଚଳିଲେ ଅଶାନ୍ତ              ମନରେ କୁହୁଳା
ହୃଦୟେ ପଢ଼ିବା ଆଶେ ।
ଗୌତମ ମହର୍ଷି              ଶିଷ୍ୟତ୍ୱ ଗ୍ରହଣ
କରି ବେଦ ଅଧ୍ୟୟନ,
ଆରମ୍ଭିଲେ ପାଶେ           ରହି ଦୃଢ଼ତାରେ
ପ୍ରାପ୍ତି ଅର୍ଥେ ଦିବ୍ୟଜ୍ଞାନ ।

ଶିକ୍ଷା ପ୍ରାପ୍ତି ଅନ୍ତେ ସୁରେ ବୃହସ୍ପତି
ନିକଟେ ହୋଇ ହାଜର,
ଅନୁରୋଧ କଲେ ହୁଅ ତୁମ୍ଭେ ସ୍ୱର୍ଗେ
ଗୁରୁ ଆମ୍ଭମାନଙ୍କର ।
ପ୍ରତିସ୍ପର୍ଦ୍ଧା ଜଣେ ବ୍ୟକ୍ତିର ବୁଦ୍ଧିକୁ
କଳୁଷରେ ଢ଼ାଙ୍କିଦିଏ,
ଶରଦ ପୂର୍ଣ୍ଣିମା ଶଶି ତାକୁ ଧୂମେ
ଗ୍ରସ୍ତ ହୋଇ ଦେଖାଯାଏ ।
ବୃହସ୍ପତିଙ୍କର ବିରୁଦ୍ଧେ ଯେ ଈର୍ଷା
ମଂଜି ତାଙ୍କ ହୃଦେ ଥିଲା,
ତାଙ୍କ ଉନ୍ନତିରେ ଅନାୟାସେ ସିଏ
ପାଣି ପାଇ ଗଜୁରିଲା ।
ଅଙ୍ଗିରସ ପୁତ୍ରେ ଶତ୍ରୁ ମନେକରି
ଶତ୍ରୁର ଶତ୍ରୁକୁ ମିତ୍ର,
ହୃଦୟରେ ଚିନ୍ତି ବିନା ନିମନ୍ତ୍ରଣେ
ଦୈତ୍ୟେ କଲେ କୋଳାଗ୍ରତ ।
ନିଜ ଆଡୁ ଯାଇ ଅସୁରଙ୍କୁ ରାଇ
ନିଜେ କରିଲେ ଘୋଷଣା,
ଅସୁରଙ୍କ ଗୁରୁ ମୁହିଁ ଶୁକ୍ରାଚାର୍ଯ୍ୟ
ଘେନ ମୋର ସୁମନ୍ତ୍ରଣା ।
ପ୍ରତିସ୍ପର୍ଦ୍ଧା ହେତୁ ଏତେ ବଡ଼ ଜ୍ଞାନୀ
ଜୀବନ ସାରା ଦୈତ୍ୟଙ୍କ,
ସହିତ ଚଳିଲେ ଦୌରାତ୍ମ୍ୟ ସହିଲେ
ମନେ ଚାପି ଦୁଃଖଶୋକ ।

ତେଜ ବୁଦ୍ଧି ଜ୍ଞାନ          ତପସ୍ୟା ସାଧନା
ଆଦିରେ ଯେ ଅଦ୍ୱିତୀୟ,
ସଞ୍ଜିବନୀ ମନ୍ତ୍ର          ହାସଲ କଲେ ଯେ
ତୋଷ କରି ମୃତ୍ୟୁଞ୍ଜୟ ।
ଗୁରୁ ପ୍ରତି ନିଜ          ଅବିଶ୍ୱାସ ତାଙ୍କୁ
ସଜାଇଲା ଦୈତ୍ୟଗୁରୁ,
ଯେଉଁ ଜ୍ଞାନ ପାଇଁ          ହୋଇଥାନ୍ତେ ପୂଜ୍ୟ
ଈର୍ଷା ଲାଗି ହେଲା ମାରୁ ।
ସଦ୍‌ଗୁରୁଙ୍କ କାର୍ଯ୍ୟେ          ସନ୍ଦେହ ଯେ କରେ
ତା' ସାଥେ ହୁଏ ଏପରି,
ତଳକୁ ତଳକୁ          ରାସ୍ତା ଦେଖାଯାଏ
ପାରେନା ସିଏ ଉବୁରି ।





# ଗୁରୁ ଧୌମ୍ୟ ଓ ଉପମନ୍ୟୁ

ଧୌମ୍ୟ ମୁନିଙ୍କର ଆଶ୍ରମରେ ଥିଲେ
ଉପମନ୍ୟୁ ନାମେ ଶିଷ୍ୟ,
ଚରିତ୍ରବାନ ସେ ସବୁ କାର୍ଯ୍ୟେ ଦକ୍ଷ
ଗୁରୁ ତା' ପ୍ରିୟ ମଣିଷ ।
ଗୁରୁଭକ୍ତ ଗୁରୁ ବାକ୍ୟକୁ ଅକ୍ଷରେ
ଅକ୍ଷରେ କରେ ପାଳନ,
ଗୁରୁଙ୍କ କଥାକୁ କୌଣସି ସମୟେ
କରଇ ନାହିଁ ଅମାନ୍ୟ ।
ଗୁରୁ ଆଶ୍ରମରେ ରହି ଶିଷ୍ୟମାନେ
ସ୍ୱସାମର୍ଥ୍ୟ ଅନୁସାରେ,
ବିଦ୍ୟା ଶିକ୍ଷା ସହ କରନ୍ତି ବିଭିନ୍ନ
କରମ ବୁଦ୍ଧି ବଳରେ ।
ଆଶ୍ରମର ଗାଈ ପାଳନ ଦାୟିତ୍ୱ
ଉପମନ୍ୟୁ ପରେ ନ୍ୟସ୍ତ,
ଦିନସାରା ତେଣୁ ଗାଈଙ୍କ ସେବାରେ
ରହି ଥାଏ ସିଏ ବ୍ୟସ୍ତ ।
ଦିବସ ସମୟେ ଏକାର୍ଯ୍ୟ କରଇ
ରାତିରେ କରଇ ଭିକ୍ଷା,
ସେହି ଭିକ୍ଷାନ୍ନରେ ଉଦର ପୋଷଣ
କରି କରେ ଜୀବ ରକ୍ଷା ।
ଗୁରୁ ଦେବ ଥରେ ଉପମନ୍ୟୁଙ୍କର
ଚିନ୍ତିଲେ ନେବେ ପରୀକ୍ଷା,
କେତେ ଗୁରୁ ଭକ୍ତ ତା' କାର୍ଯ୍ୟରେ ଦକ୍ଷ
କେତେ ତାହାର ତିତିକ୍ଷା ।

ଦିନେ ଗୁରୁ ଦେବ          ପାଶକୁ ଡକାଇ
ବୋଇଲେ ହେ ବତ୍ସ ଶୁଣ,
ଯେତେବେଳେ ଯାହା          ଯେଉଁଠୁ ସଂଗ୍ରହ
କରିବ ଗୁରୁଙ୍କ ମଣ ।
ତହିଁରେ ଗୁରୁଙ୍କ          ପୁରା ଅଧିକାର
ସେଦ୍ରବ୍ୟ ଆଶ୍ରମେ ଦେବ
ସ୍ୱଇଚ୍ଛାରେ କାର୍ଯ୍ୟ          କର ଯେବେ ଗୁରୁ
ଅବଜ୍ଞା ଦୋଷ ଲାଗିବ ।
ଅଧିକ ଚିନ୍ତିତ          ହୋଇ ଉପମନ୍ୟୁ
ମାନି ଗୁରୁଙ୍କ ବଚନ,
ରାତିର ପ୍ରଥମ          ଭିକ୍ଷା ଦ୍ରବ୍ୟ ଆଣି
କଲା ଗୁରୁଙ୍କୁ ଅର୍ପଣ ।
ଦ୍ୱିତୀୟ ଥର ସେ          ପୁଣି ଭିକ୍ଷାମାଗି
ଯାଇ ଯାହା ଆଣି ଆସେ,
ତହିଁରେ ଯେମିତି          ସମ୍ଭବ ସେମିତି
ଉଦର ତାହାର ପୋଶେ ।
ଗୁରୁ ଦେବ ଜାଣି          ବୋଇଲେ ବିରକ୍ତ
ହୋଇ ଅଧିକ ଆହୁରି,
ଅନ୍ୟାୟ କରୁଛ          ଗୁରୁଙ୍କୁ ଠକୁଛ
ଦୁଇଥର ଭିକ୍ଷା କରି ।
ଉପମନ୍ୟୁ କ୍ଷମା ଭିକ୍ଷା ଗୁରୁ ପାଶେ
କରି ଭିକ୍ଷା ମଗା କାର୍ଯ୍ୟ,
କରିଦେଲେ ବନ୍ଦ          ଭାଗ୍ୟକୁ ନ ନିନ୍ଦି
ମନରେ ବାନ୍ଧିଲେ ଧୈର୍ଯ୍ୟ ।



ଚିନ୍ତା କଲେ ପିଇ ବିତାଇବେ ଦିନ
ଗାଈ ମାନଙ୍କର କ୍ଷୀର,
ଗୁରୁ ଜାଣି କଲେ ତାଗିଦ କ୍ଷୀରରେ
ବାଛୁରୀର ଅଧିକାର ।
କ୍ଷୀର ପିଇବାକୁ ମନା କରି ବାରୁ
ବାଛୁରୀ ମୁହଁର ଫେଣ,
କ୍ଷୀରଯୁକ୍ତ ବୋଲି ଖାଇ ବିତାଇଲେ
ଯେନତେନ କିଛି ଦିନ ।
ଗୁରୁ ଦେବ ଯେବେ ଏକଥା ଜାଣିଲେ
ବାରଣ କଲେ ତାହାକୁ,
ଉପମନ୍ୟୁ ମଧ୍ୟ ତାହାକୁ ତେଜିଲେ
ମାନି ଗୁରୁଙ୍କ କଥାକୁ ।
ଗୁରୁ ଆଦେଶକୁ ମାନି ନେଲେ ସିନା
ପେଟକି କା ବୋଲ ମାନେ,
ଭୋକ ସମ୍ଭାଳିବା ହୋଇଲା ଅସହ୍ୟ
କି ଖାଇବି ଭାବି ମନେ ।
ଭୋକ ବିକଳରେ ନିକଟରେ ଥିବା
ଅରଖ ଗଛର ପତ୍ର,
ତୋଳି ଖାଇଦେଲେ ବିଷାକ୍ତ ତା' ଥିଲା
ନଷ୍ଟ ହୋଇ ଗଲା ନେତ୍ର ।
ରାସ୍ତା ଖୋଜି ଖୋଜି ଆଶ୍ରମେ ଫେରିବା
ପଥେ ଚକ୍ଷୁହୀନ ହୋଇ,
ଦୁର୍ଭାଗ୍ୟବଶତଃ ପତିତ ହୋଇଲେ
ଏକ ଶୁଷ୍କ କୂପ ଯାଇ ।

ଦିନକର ଦିନ କର କାମ ସାରି
ବାହୁଡ଼ିଲେ ରାତ୍ରି କୋଳେ,
ବିହଗେ ଚଳିଲେ ନୀଡ଼େ ମୁଖରିତ
ହେଉଥିଲା କୋଳାହଳେ ।
ଦୂର ବନ ଦେଶୁ ଶୃଗାଳ ହୁକେ ହୋ
ଶୁଭାଗଲା ରହି ରହି,
ଆଶ୍ରମରେ ଶିଷ୍ୟେ ଗୁରୁଙ୍କ ସାମନେ
ବସିଲେ ଧରିଣ ବହି ।
ଦୂର ଗ୍ରାମଦେଶୁ ଶୁଭିଲା ମନ୍ଦିର
ଘଣ୍ଟି ସନ୍ଧ୍ୟା ଆଗମନେ,
ଗାଈପଲ ଧୂଳି ଉଡ଼ାଇ ଆଶ୍ରମେ
ଗଲେ ରକ୍ଷକ ବିହୁନେ ।
ନ ଥିବାର ଦେଖି ଉପମନ୍ୟୁ ଗୁରୁ
ଧୌମ୍ୟ ଗୋଗୋଷ୍ଠ ସହିତ,
କେଣେ ଗଲା ବୋଲି ଖୋଜି ବାହାରିଲେ
ଆଶ୍ରମର ପ୍ରିୟ ଛାତ୍ର ।
ଖୋଜିବା ସମୟେ ଶୁଣିଲେ କୂପରୁ
କା'ର ବିକଳ ଚିତ୍କାର,
ପାଶେ ଯାଇ ଦେଖି ଉପମନ୍ୟୁ ସେଠି
ଗୁରୁ ହୋଇଲେ ଆତୁର ।
ପ୍ରଦାନ କରିଲେ ସିଦ୍ଧ ମନ୍ତ୍ର ତାଙ୍କୁ
ଯା'ର ଉପଯୋଗ କରି,
ଦେବ ବୈଦ୍ୟ ଦୁଇ ଅଶ୍ୱିନୀ କୁମାରେ
ଆବାହନ କଲେ ସ୍ମରି ।

ଆଶୀର୍ବାଦରୁ ସେ ପୁଣି ଥରେ ଫେରି
ପାଇଲେ ଦୃଷ୍ଟି ଶକତି,
ସମସ୍ତ ପ୍ରକାର ଜ୍ଞାନ କଲେ ଦାନ
ଦେଖି ତାଙ୍କ ଗୁରୁଭକ୍ତି ।
ଗୁରୁ ପଦେ ନିଷ୍ଠା ଅନନ୍ୟ ରୂପରେ
ରଖେ ଯେ ମନ ମଧ୍ୟରେ,
ନ ପଢ଼ି ପଣ୍ଡିତ ହୋଇପାରେ ସିଏ
ଗୁରୁଙ୍କ କୃପା ବଳରେ ।






ହନୁମାନ ଚରିତ୍ରାମୃତ କାବ୍ୟ ମାନ୍ୟବର ରାଜ୍ୟପାଳଙ୍କ କରକମଳରେ ଉନ୍ମୋଚିତ



ଡକ୍ଟରେଟ ଉପାଧି ଗୁରୁଙ୍କ ହାତରେ



ଲଡୁବାବା ବିଳାସ କାବ୍ୟ ଉନ୍ମୋଚନ ଉତ୍ସବ



ଲଡୁବାବା ସ୍ତୋତ୍ରମାଳା ପୁସ୍ତକ ଉନ୍ମୋଚନ




ତୁମ ଇଚ୍ଛା ପୂର୍ଣ୍ଣହେଉ
ପୁସ୍ତକ ବିଧାୟକଙ୍କ ହସ୍ତରେ ଉନ୍ମୋଚିତ



କବି ତିଳକ ଡଃ ସୁରେଶ ଚନ୍ଦ୍ର ବରାଡ଼ ନୟାଗଡ଼ ଜିଲ୍ଲା ଅନ୍ତର୍ଗତ ଶରଣକୁଳ ନିକଟବର୍ତ୍ତୀ ହରିହରପୁର ଗ୍ରାମରେ ଏକ କୁଳୀନ ଖଣ୍ଡାୟତ ପରିବାରରେ ୧୯୬୮ ମସିହା ଜୁଲାଇ ୬ ତାରିଖରେ ପିତା ଗୋବିନ୍ଦ ବରାଡ଼ ଓ ମାତା ପଦ୍ମାଙ୍କର କୋଳ ମଣ୍ଡନ କରିଥି ଲେ। ୧୯୭୩ ମସିହାରେ କରଡ଼ା ହରିହରପୁର ପ୍ରାଥମିକ ବିଦ୍ୟାଳୟରେ ବିଦ୍ୟାଧ୍ୟୟନ କରି ୧୯୭୮ ମସିହାରେ ନାରାୟଣ ଉଚ୍ଚ ବିଦ୍ୟାଳୟକୁ ଷଷ୍ଠ ଶ୍ରେଣୀରେ ଅଧ୍ୟୟନ ନିମନ୍ତେ ଗମନ କରିଥିଲେ। ୧୯୮୦ ମସିହାରେ ସପ୍ତମ ଶ୍ରେଣୀ ବୃତ୍ତିପାଇ ସେହି ବିଦ୍ୟାଳୟରୁ ୧୯୮୩ ମସିହାରେ ପ୍ରଥମ ଶ୍ରେଣୀରେ ମେଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ସେହି ବର୍ଷ ନୟାଗଡ଼ କଲେଜରେ ଉଚ୍ଚ ମାଧ୍ୟମିକ ଶ୍ରେଣୀରେ ବିଜ୍ଞାନ ବିଷୟ ରଖି ନାମ ଲେଖାଇଥିଲେ। ପରେ ସେଇଠି ପଦାର୍ଥ ବିଜ୍ଞାନ ସମ୍ମାନ ସହ ୧୯୮୯ ମସିହାରେ ସ୍ନାତକ ଡ଼ିଗ୍ରୀ କୃତିତ୍ୱର ସହିତ ହାସଲ କରିଥି ଲେ। ୧୯୯୪ ମସିହାରେ ଭଞ୍ଜ ବିହାର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅର୍ଥନୀତି ବିଷୟରେ ଓ ୨୦୨୦ରେ ଓଡ଼ିଶା ମୁକ୍ତ ବିଶ୍ୱ ବିଦ୍ୟାଳୟ, ସମ୍ବଲପୁରରୁ ଓଡ଼ିଆ ବିଷୟରେ ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରିଛନ୍ତି। ବିଜ୍ଞାନର ଛାତ୍ର ହୋଇଥିଲେ ମଧ୍ୟ ସେ ପଞ୍ଚିରିଡ଼ା ମାନପୁର ଉଚ୍ଚ ବିଦ୍ୟାଳୟରେ ୧୯୯୦ ମସିହାରୁ ତାଲିମ ପ୍ରାପ୍ତ ହିନ୍ଦୀ ଶିକ୍ଷକ ରୂପେ କାର୍ଯ୍ୟରତ ଓ ହିନ୍ଦୀ ସହିତ ବିଜ୍ଞାନ ତଥା ଗଣିତ ଅଧ୍ୟାପନାରେ ନିଯୁକ୍ତ ଅଛନ୍ତି। ସମୟାନୁବର୍ତ୍ତିତା, ପରୋପକାରିତା, ସଚ୍ଚୋଟତା, ନିୟମାନୁବର୍ତ୍ତିତା ଓ ଛାତ୍ରବତ୍ସଳତା ପାଇଁ ସେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବେଶ ପରିଚିତ। ଜଣେ ସମାଜସେବୀ, ଲେଖକ, କବି ଓ ଗବେଷକ ରୂପରେ ସମାଜରେ ସେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି। ଗୁରୁକୁଳ ପ୍ରକାଶନ ତାଙ୍କର ନିଜସ୍ୱ ପ୍ରକାଶନ ସଂସ୍ଥା। ତାଙ୍କ ଦ୍ୱାରା ରଚିତ ମହିମାମୟ ଲଡୁବାବା, ପୁରୁଷୋତ୍ତମ ସ୍ତବ, ଲଡୁବାବା ବିଳାସ ଓ ସମ୍ପାଦିତ ଲଡୁବାବା ଭଜନ ମାଳା, ଖଳି ମହାଭାରତ ପ୍ରକାଶିତ ହୋଇ ଭକ୍ତ ମହଲରେ ଉଚ୍ଚ ପ୍ରଶଂସିତ। ତାଙ୍କର ଅନ୍ୟ ରଚନା ଗୁଡ଼ିକ ହେଲା କପିଳ ସଂହିତା(ନୀଳାଚଳ କ୍ଷେତ୍ର ମାହାତ୍ମ୍ୟ), ଲଡୁବାବା ସ୍ତୋତ୍ରମାଳା, ହନୁମାନ ଚରିତାମୃତ, କୁସୁମୀ, କବିତା ଅଷ୍ଟୋତ୍ତରଶତ, ତୁମ ଇଚ୍ଛା ପୂର୍ଣ୍ଣ ହେଉ, ଲଡୁବାବା ସ୍ତୋତ୍ରମାଳା,ନାରୀ,ଗଳ୍ପ ପାଇଁ [illegible] ଓ ଶିଶୁ କବିତା ପୁସ୍ତକ "ବିପ୍ଳବ"।









ଜଗନ୍ନାଥ ପ୍ରିଣ୍ଟିଙ୍ଗ ପ୍ରେସ୍, ଶରଣକୁଳ, ନୟାଗଡ଼, ମୋ-[illegible]